# କୋଣାର୍କ

( ଜାତୀୟ ନାଟକ )

ନାଟ୍ୟକାର—

ଶ୍ରୀ ଅଶ୍ୱିନୀକୁମାର ଘୋଷ, ଏମ୍. ଏ.,

ନାଟ୍ୟ ସମ୍ରାଟ, ନାଟ୍ୟ ଭାରତୀ, ନାଟ୍ୟ ରତ୍ନାକର

ପ୍ରକାଶକ—
ଶ୍ରୀ ଅରୁଣ ଘୋଷ
ଅକ୍ଷୟ ଭଣ୍ଡାର, କଟକ

ଷଷ୍ଠ ସଂସ୍କରଣ—୧,୦୦୦

ମୂଲ୍ୟ—ଏକଟଙ୍କା ବାରଅଣା ମାତ୍ର

ମୁଦ୍ରାକର—
ଶ୍ରୀ ଅଜୟକୁମାର ଘୋଷ
ଶ୍ରୀ ହରନାଥ ପ୍ରେସ
କଟକ-୨

ଶ୍ରୀ ପ୍ରାଣକୃଷ୍ଣ ପରିଜା, ଆଇ. ଇ. ଏସ୍.

ସୁହୃଦ୍ ବରେଷୁ ।

ପ୍ରିୟ ସୁହୃଦ୍ !

ତୁମେ ମୋ'ର ସଢ଼ିଅଭାଇ ଶ୍ରୀମାନ୍ ଶରତକୁମାର ହାତରେ, ଉତ୍କଳମଣି ଶ୍ରୀଯୁକ୍ତ ଗୋପବନ୍ଧୁ ଦାସଙ୍କ ରଚିତ ଧର୍ମପଦ ନାମକ ପୁସ୍ତକ ଖଣ୍ଡି ପଢ଼ି, ସେହି ବିଷୟରେ ଗୋଟିଏ ନାଟକ ଲେଖିବାକୁ କହି ପଠାଇଥିଲ । ମୁଁ ସେହି ପ୍ରେରଣାର ଫଳ ମାତ୍ର ତୁମକୁ ଉପହାର ଦେଲି, ଗ୍ରହଣ କଲେ ସୁଖୀ ହେବି । ଇତି ।

ତୁମର

ଅଶ୍ୱିନୀ

# ପରିଚୟ

## ପୁରୁଷ

| | |
|---|---|
| ନରସିଂହ ଦେବ | ଓଡ଼ିଶାର ରାଜା |
| ଶିବେଇ ସା'ନ୍ତରା | ଏକ୍ନ ପାତ୍ର |
| ବିଶୁ ମହାରଣା | ପ୍ରଧାନ ଭାସ୍କର |
| ଧର୍ମା | ଏକ୍ନ ପୁତ୍ର |

ମନ୍ତ୍ରୀ, ସଭାସଦ୍‌ଗଣ, ଭାସ୍କରଗଣ,
ବାଲକଗଣ, ନୋଲିଅଗଣ ଇତ୍ୟାଦି

## ସ୍ତ୍ରୀ

| | |
|---|---|
| ମହାରାଣୀ | ଓଡ଼ିଶାର ରାଣୀ |
| ସର | ଜନୈକ ଭାସ୍କର-ବାଲିକା |

ଧର୍ମା-ମା, ସର-ମା ଓ ମାହାରୀଗଣ ।



# ପ୍ରସ୍ତାବନା

[ ଅଦୂରରେ କୋଣାର୍କର ସେହି ଭୁବନ ବିଖ୍ୟାତ ମନ୍ଦିର ଦେଖାଯାଉଥିବା ]

ଗୀତ

ଜାଣି କାଳସିନ୍ଧୁ, ମହାସିନ୍ଧୁ ବକ୍ଷେ—
କେ ତୁମ୍ଭେ ହେ ମହାମନ୍ଦିର ! ମହିମା ତାର ଅନୁପମ
ପ୍ରସ୍ତର ଇଙ୍ଗିତେ (ଆଜି) ଜଗତ ସମକ୍ଷେ ।

ଯୁଗ-କୀଟ-ଦଷ୍ଟ ତବ ପୃଷ୍ଠାରେ ପୃଷ୍ଠାରେ
ଲିଭି ନାହିଁ, ଲିଭି ନାହିଁ
ଓଡ଼ିଆର ସେ କୀର୍ତ୍ତିତ କଳା କୌଶଳ କାହାଣୀ;

ଭଗ୍ନ ମୂରଜର ଛନ୍ଦ ପରତେ, ପରତେ
ଲିଭି ନାହିଁ, ଲିଭି ନାହିଁ
ଓଡ଼ିଆର ସେ ବନ୍ଦିତ ବିଶ୍ୱ ବିଜୟ-ରାଗିଣୀ;

ଜାଗ, ଜାଗ, ଭାଇ ତୁଟାଅ ମୂର୍ଚ୍ଛନା,
ଜଗାଅ ଝଙ୍କାରେ ବିଶ୍ୱର ସ୍ପନ୍ଦନା—
ସ୍ତମ୍ଭ ଶିଳ୍ପ ଅଙ୍କ କର ହେ ଭାସ୍କର
ମଥିତ ଗୌରବେ ଗରବେ ଉଦ୍ଧର;
ରଞ୍ଜିତ ଅତୀତ ଯଶେ ଉଠୁ ହେ ପ୍ରଭାତେ
ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ଉପସ୍ଥିତ ବକ୍ଷେ ॥

---

# ପ୍ରଥମ ଅଙ୍କ

**ପ୍ରଥମ ଦୃଶ୍ୟ—**

[ ପଲ୍ଲିଗ୍ରାମର ଛୁଗ୍ରୀଅନା କୁଞ୍ଜର ଗୋଟିଏ ନିଭୃତ କୋଣରେ ଗୋଟିଏ ସୁଗଠିତ କାୟ, ଗୌରବର୍ଣ୍ଣ, ଦ୍ୱାଦଶବର୍ଷୀୟ ବାଳ ଷିଲାଖଣ୍ଡ ବେନ କ ଏକ ସୁଉପଭ କାର୍ଯ୍ୟରେ ନିବଦ୍ଧଚିତ୍ତ—ଚଳିତଚଞ୍ଚଳ-ଦୃଷ୍ଟି ଗୋଟିଏ ବାଳିକା, ପ୍ରାୟ ସମବୟସ୍କା, ପରମାସୁନ୍ଦରୀ, ମୁକ୍ତକଣ୍ଠରେ ଗାନ କରୁଥିଲା— ]

ଗୀତ

ସବ—ଯେ ସୁରେ ବାଜଇ ତବ ହୃଦୟ ଯନ୍ତ୍ର,
ସେ ସୁରେ ଗାଇବ ବୋଲି ବିକଳ ଅନ୍ତର;
( କିନ୍ତୁ ) ଏ କି ବିଡ଼ମ୍ବନା—

କାନ୍ଦୁଛ ରସନା—କଣ୍ଠେ ଉଠେ ନାହିଁ ସ୍ୱର ।
ଯୁଗ, ଯୁଗ ସାରା କଲି ମୁଁ ସାଧନା;
ସୁର, ତାଳ, ଲୟ—ନାହିଁଟି କଳନା;
ବିଫଳ—ବିଫଳ ( ଏବେ )
ସବୁ ଆରାଧନା—ଏ' କି ( ଭବ ) ମୋହନ ମନ୍ତ୍ରର ।
( ହଠାତ୍ ଗାନଟି ବନ୍ଦ ହୋଇଯିବାରୁ ଶିଳ୍ପିର
ଗୃଳଭ ଯନ୍ତ୍ରଟି ନୟନଭ୍ରଷ୍ଟ ହୋଇଗଲା )

ଧର୍ମ୍ମା—ଚୁ, ଚୁ—କ'ଣ କଲ ତୁମେ, ସର ?

ସର—ମ'—ମୁଁ ତ ହୂରଛଡ଼ା ହୋଇ ବହୁଚି—

ଧର୍ମ୍ମା—ବହୁଚ ତୁମେ ସିନା—ତୁମର ଗାନ ଯେ—

ସର—ଓଁ ହୋ ! ଭିତରେ ଭିତରେ ତମର ଅଜବାଲି ଖେଳୁଚି, ନା ?

ଧର୍ମ୍ମା—ଖାଲି କଣ ଖେଳୁଚି ?

ସର—ଅଉ କ'ଣ ଖେଳାଉଚି ?

ଧର୍ମ୍ମା—ନହାଣ ତେବେ ମୋର ଏମିତି ଖସଡ଼ିଗଲା କାହିଁକି ?

ସର—ଭାଗ୍ୟେ ନିଜେ କଚୁଡ଼ି ହୋଇ ପଡ଼ିନାହିଁ ?

ଧର୍ମ୍ମା—ଅହା !—ଦେଖିଲ କେଡ଼େ ଦାଗଟାଏ ପଡ଼ିଗଲା—
( ଶିଳାଖଣ୍ଡ ପ୍ରତି ବାଳକାର ଦୃଷ୍ଟି ଆକର୍ଷଣ କରିବା )

ସର—ତୁମ ଦେହ ମୁଣ୍ଡରେତ ପଡ଼ିନାହିଁ ?

ଧର୍ମ୍ମା—ତା' ହୋଇଥିଲେ ବରଂ ସହ ହୋଇଥାନ୍ତା ।

ସର—ସତେ ? ତେବେ ଏତେ ଗୃଡ଼ାଏ ପୋଥିପଢ଼ିବା ଅକାରଣ ହେଲା ସିନା ?—

ଧର୍ମ୍ମା—ହୋଇଥାନ୍ତା, ଯେବେ ତୁମପରି ଗୋଟିଏ ସୁଗାୟିକା ସଙ୍ଗିନୀ ମୋର ନ ଥାନ୍ତା ।

ସର—ହୁଁ—ମୋ'ର ଗୀତ ସଙ୍ଗେ ତୁମ ପୋଥିର ଏତେ ଘନିଷ୍ଠ ସମ୍ବନ୍ଧ ?—

ଧର୍ମ୍ମା—ଠିକ୍ ପ୍ରାଣସଙ୍ଗେ ପିଣ୍ଡର ଯେପରି ସମ୍ବନ୍ଧ, ସର ।

ସର—ପିଣ୍ଡକୁ ଛାଡ଼ି କ'ଣ ପ୍ରାଣ ବାହାରିଯାଏ ନାହିଁ ?

ଧର୍ମ୍ମା—ହେଲେ, ସେ ସୌନ୍ଦର୍ଯ୍ୟ କି ଆଉ ପିଣ୍ଡର ରହେ ?

ସର—ଓ ହୋ ! ଏତେଦିନେ ବୁଝିଲି, ତାହିଁକି ତମର କାମ ଗୁଡ଼ିକ ଆଜିକାଲି ଭାରି ସୁନ୍ଦର ହେଉଛି ।

ଧର୍ମ୍ମା—ସୁନ୍ଦର ହେଉଛି କି ଅସୁନ୍ଦର ହେଉଛି, ତା ତୁମେ ଜାଣ—ମାତ୍ର ଯାହା କରୁଛି, ସେଥିରେ ମୋର ଭାରି ଆନନ୍ଦ ହେଉଛି—

( ଅଲକ୍ଷ୍ୟେ ବାଳକ-ମାତାର ପ୍ରବେଶ )

ସର—ଏହି ତ ମୋର ଗୀତର କରାମତି !

ଧର୍ମ୍ମା—ନିଶ୍ଚୟ !

ସର—ପୋଥି ଛାଡ଼ି ତେବେ ଗୀତ ଶିଖି ନାହିଁ ?—

ଧର୍ମ୍ମା—ପିଣ୍ଡ ଥିଲେ ପ୍ରାଣ କାର୍ଯ୍ୟ କରିବ ସିନା ?

ସର—( ସୋତ୍ସାହେ ) ଠିକ୍—ଠିକ୍—ଏଣିକି—ଦେଖିବା ଆଜି କାହାରିକୁ ଛାଡ଼ି ରହି ପାରିବା ନାହିଁ—ନା, ଭାଇ ?

ଧର୍ମ୍ମା—ପୃଥିବୀ ପ୍ରଳୟ ହୋଇ ଗଲେ ମଧ୍ୟ ନୁହେଁ ।

( ସସ୍ନେହେ ପରସ୍ପର ହସ୍ତ ଗ୍ରହଣ କରିବା )

ଧର୍ମ୍ମା-ମା—(ସ୍ୱଗତ) ପ୍ରଭୁ, ଜଗନ୍ନାଥ ! ସତେ କଣ—

( ଦୀର୍ଘନିଃଶ୍ୱାସ ତ୍ୟାଗ )

ଧର୍ମ୍ମା—( ହଠାତ୍ ଶିଳାଖଣ୍ଡ ଉପରେ ଦୃଷ୍ଟି ପଡ଼ିବାରୁ ) ହଁ, ହଁ, ସରଟି ମୋର,—ଗାଇବଟି—ଟିକିଏ ବାଜି ରହିଗଲା, ସାର ଦିଏଁ ।

ସର—( ସ୍ନେହ-ବିଜଡ଼ିତ ସ୍ୱରରେ ଗାଇବାକୁ ଲାଗିଲା )

ଗୀତ

ମୁହିଁ ତୁମରି ତୁମ୍ଭେ ଗୋ ମୋ'ରି—
ବଂଶୀ ବୋଲଇ ଏ ସ୍ୱନ ମୋ'ରି ।
ସେ ସ୍ୱନ ଲହରୀ                    ଖେଳେ ବାହାରି
ବିଶ୍ୱସାରି ଚାହିଁ ଅନ୍ତ ତା'ରି—
ଅନ୍ତ ମୁଁ ତୁମ୍ଭ ତୁମ୍ଭେ ଯେ ମୋ'ରି ।

ଧର୍ମ୍ମା—( ନିବିଷ୍ଟଚିତ୍ତରେ କାର୍ଯ୍ୟ କରିବାକୁ ଲାଗିଲା—କିଛିକ୍ଷଣ ପରେ ହଠାତ୍ ଗୀତର ମଧ୍ୟସ୍ଥଳେ ଚିତ୍କାର କରି ଡେଇଁ ଉଠିବାରୁ ବାଳକାଟିର ଗାନରେ ବାଧା ପଡ଼ିଲା )
ସର, ସର ! ଦେଖ, ଦେଖ—କେଡ଼େ ସୁନ୍ଦର ହୋଇଚି !
ସ୍ୱପ୍ନରେ ବି ମୁଁ ଏମିତିକା କଳ୍ପନା କରି ନ ଥିଲି—
( ମୂର୍ତ୍ତିଟି ଅତି ଆଗ୍ରହରେ ଦେଖିବାକୁ ଲାଗିଲା )

ସର—ବାସ୍ତବରେ ଯେ ମୁଁ ଏମିତିକା କଳ୍ପନା କରିପାରୁ ନାହିଁ, ଗୀତଟା 'ସୋମ୍'ରେ ନ ପହଁଚୁଣୁ ତୁମେ ଏ'ପରି ସୁର ଧରି, ତାଳ ଠୁକି ଉଠିଅ ହେବ ?

ଧର୍ମ୍ମା—( ଅପ୍ରସ୍ତୁତ ଭାବେ ) ମୋ'ର ଆଜି କି ସୋମ୍ ବେସୋମ୍ ଜ୍ଞାନ ଥିଲା, ସର ?

ସର—ନିଶ୍ଚୟ ତା' ହେଲେ ତମେ ମୋର ଗୀତ ଶୁଣୁ ନ ଥିଲ ।

ଧର୍ମ୍ମା—ତୁମର ଗୀତ ଯେ ମୋ'ର ଏହି ଦଶା କରିଥିଲା, ସର— ତୁମେ ଗାଉଥିଲ ଆଉ ମୋ ଭିତରେ ଭିତରେ କେଉଁ ବସନ୍ତର ଉତ୍ସ ଖୋଲି ଯାଉଥିଲା—ଆଖିଆଗେ କେଉଁ ଶରତର ଶୋଭା ଖେଳି ବୁଲୁଥିଲା;—ଏହି ମୂର୍ତ୍ତିଟି ମୁହିଁ ଦେଖିତ

ଥରେ—ଯେମିତକା ସେହି ସବୁ ରୂପ ରସ ମାଧୁର୍ଯ୍ୟ ଏକା-ବେଳକେ ଗ୍ରେପି, ଗିଳ ଟିମ୍ ଟିମ୍ ହୋଇ ରହୁଛି । ( ହଠାତ୍ ମୁହଁ ଶୁଖାଇ ) ସର, ସର—ଅଳ୍ପଟିକିଏ ଗାଅତ—

ସର—ନା—

ଧର୍ମ୍ମ—ସରଟି ପରା ।—ଦେଖିଲ, ଅଳ୍ପ ଟିକିଏ—

ସର—ଅଚ୍ଛା, ବେଶ୍—ମୋ'ଗଣ ପକାଅ ଆଗେ ।

ଧର୍ମ୍ମ—ଗଣ ? ହଜ, କ ଗଣ, କୁହ ?

ସର—ଅଜ୍ ବେଢାଳଅଗିର କରବ ନାହିଁ ।

ଧର୍ମ୍ମ—( ହସି ) ଅଚ୍ଛା—ମୋ ସର-ଗଣ, ଅଜ୍ କେବେ—

ସର—ହେଲ ଯେ—( ଗଳାହ୍ଲାଡ଼ି ପୁନରାୟ ଗାଇବା )

ଗୀତ

ଗାଉଥିବ ହସି, ପାଶେ ପାଶେ ବସି,
ଏହିତ ମୋ' ସଖା କାମନା ବାସନା ।
ନୟନେ, ନୟନେ, ମୂରଛ ମୋହନେ,
ହେରୁଥିବ ସଦା କାମନା ବାସନା ।
ନିମିଷକ ପାଇଁ ଯଦ ସଖା ମୋ'ର.
ହୋଇଯାଅ ତୁମ୍ଭେ ପାଶରୁ ଅନ୍ତର—
ଲିଭିଯାଏ ଦୀପ ଶିଖା କ୍ଷଣକରେ,
ବାଃତ ଅନ୍ଧାରେ ଦଶେନା ଦଶେନା ।
ଅସ ଅସ ସଖା, ହୃଦୟେ—
ଅସ ଅସ ଶୂନ୍ୟ ଅଳୟେ—
ଯେଉଁପର ମନ ସଜାଡ଼ି ଅସନ,
ବସ, ବସ ନାହିଁ ମୋ' ମନା;

ଛୁଟିଯାଉ ମୋହ ମୋହର,

ଭୁଲିଯାଉ ଦୂରେ ଅନ୍ଧାର,

ଜଳ ଉଠୁ ଦୀପ ଉଜ୍ଜ୍ୱଳ ଉଜ୍ଜ୍ୱଳ—

ଏହତ ମୋ ସଖୀ କାମନା ବାସନା ।

( ଧର୍ମ୍ମ ଗୀତ ସଙ୍ଗେ ସଙ୍ଗେ ନିଜ କାମ ସାରି ନିବିଷ୍ଟ ମନେ ସରର ଗୀତ ଶୁଣୁଥିଲ )

ଧର୍ମ୍ମାମା—ଗୀତ ନ ହେଲେ କି କାମ—

ସର—( ସାଗ୍ରହେ ) କେବେ ସାରିପାରିବ ନାହିଁ, ମାଉସି । ମୁଁ ନ ଗାଇଲେ ।

ଧର୍ମ୍ମ— କୋଉ । ବୋଉ । ସତେ, ସତେ ଗୀତରେ କି ଗୋଟାଏ ମୋହନୀ ଶକ୍ତି ଅଛି,—

ଧର୍ମ୍ମାମା—ତା' ଏ ଗୀତରେ କାହିଁ, ବାପ ?

ଧର୍ମ୍ମ—( ପ୍ରଶ୍ନସୂଚକ ଦୃଷ୍ଟିରେ ଚାହିଁବା )

ସର—( ମୁହଁଟି ଗମ୍ଭୀର କରିଦେବା )—

ଧର୍ମ୍ମାମା—(ହସି) ଅଖିର ରସ ମିଠା, ସତ—କିନ୍ତୁ କେତେ-ବେଳଯାଏ, କହନି, ବାପ ?

ଧର୍ମ୍ମ—( ସୋତ୍ସୁକେ ଚାହିଁବା )

ସର—( ମୁହଁ ବୁଲାଇଦେବା )

ଧର୍ମ୍ମାମା—ଯେତେବେଳଯାଏ ଜିଭରେ ଲଗି ରହିଥାଏ—ନୁହେଁ କି ?

ଧର୍ମ୍ମ—ହଁ, ବୌ—

ଧର୍ମ୍ମାମା—ଏ' ଗୀତ କଣ—

ଧର୍ମ୍ମା—ଠିକ୍—ଠିକ୍ କହୁଚ, ବୌ—ସେ ଗୀତ ଗାଉଥିବା ଯାଏ, ମୁଁ ଯେମିତିକା କେଉଁ ସ୍ୱପ୍ନରାଜକୁ ଉଡ଼ି,ଉଡ଼ି ଉଠିଯାଉ ଥାଏ—ଆଜି ସେହି ଗୀତଟି ଦଦ ଲାଗୁଥିଲା. ଘୋଟାଏ ଭାର ଅନ୍ଧାରିଆ ଗୁହାଭିତରେ ଯେମିତିକା ନଚ୍ଚନା ପଡ଼ିଯାଏ ।

ସର—( ସଗର୍ବେ ଗୃହିଁ ) ଏହିତ ମୋର ଗୀତର କରାମତି ।

ଧର୍ମ୍ମାମା—କିନ୍ତୁ କେତେ ସାମାନ୍ୟ, କହିଲୁ ମା—ଯେଉଁ ବିଜୁଳି ଜଲଉଠି ଅନ୍ଧାର ଦୂର କରିବା ଦୂରେଥାଉ, ତାକୁ ଅଧିକ ବୃଇଗୁଣ ବଢ଼ାଇ ଦିଏ, ତା'ର ଘୋଟାଏ କ ଚିକ— କ କରାମତି ।

ଧର୍ମ୍ମା—ତେବେ କ'ଣ ଏମିତିକା ଗୀତ ଅଛି ବୋଉ, ଯା'ର କରାମତି କେବେହେଲେ କମିଯାଏ ନାହିଁ—ସବୁଦିନ ସମାନ ରହିଥାଏ ?

ଧର୍ମ୍ମାମା—ଦନୁ, ଦନୁ, ବଢ଼ୁଥାଏରେ, ବାପ—

ଧର୍ମ୍ମା—କହ, କହ ବୌ । କି ସେ ଗୀତ ?—କେଉଁଠି ଶୁଣିବାକୁ ମିଳେ ?—କିଏ ସେ ଗାୟକ ?

ଧର୍ମ୍ମାମା—ଏ' ଭାର ବିଚିତ୍ର ଗୀତ, ବାପ—ନିଜେ ଗାଇ ନିଜେ ଶୁଣିବାକୁ ହୁଏ ।

ସର—ଏଁ ।—( ବିସ୍ମାରିତନେତ୍ରେ ଗୃହିଁବା )

ଧର୍ମ୍ମାମା—ତା'ର ଗାନ ପୁଣି—(ରହିଯିବା)

ଧର୍ମ୍ମା—ଥମିଗଲ କାହିଁକି, ବୌ ? କହ—ଯେତେବଡ଼ ଦୁର୍ଗମ ଥାନ ହେଉ ପଛକେ, ମୁଁ ନିଶ୍ଚୟ ଯିବି—ସର । ତୁମକୁ ବ ଯିବାକୁ ହେବ—ଦେଖ, ଆଉ ସଙ୍ଗୀତ ଶିଖିବାକୁ ମନା କରିବ ନାହିଁ—ତୁମେ ଯେମିତିକା ଶିଖାଇବ—

ଧର୍ମ୍ମାମା—କିନ୍ତୁ ବାପ—ସେ ସଙ୍ଗୀତ ତ କେହି ଶିଖାଏ ନାହିଁ;
ତୁ ବଡ଼ ନ ହେଲେ ଯେ ଶିଖିପାରିବୁ ନାହିଁ ।

ଧର୍ମ୍ମା—ତାହିଁକି ପାରିବି ନାହିଁ, ବୌ ?—ମୁଁ କ'ଣ ବଡ଼ ହୋଇ
ନାହିଁ ?—ଧ୍ରୁବ, ପ୍ରହ୍ଲାଦ କ'ଣ ମୋ'ଠୁଁ ବଡ଼ ଥିଲେ ?—
ନା, ନା, ବୌ, ସେ କଥା କହ ନାହିଁ । କେମିତି ଶିଖିବାକୁ
ହୁଏ—ତାହିଁ ଶିଖିବାକୁ ହୁଏ—କହିଦେ, ବୌ । ତୋ'ର
ହାତ ଧରୁଚି— ତୋର' ଗୋଡ଼ ଧରୁଚି—

ଧର୍ମ୍ମାମା—ଧନରେ ମୋ'ର—ବାପରେ ମୋ'ର—( ଚୁମ୍ବ ଖାଇ )
ଠାକୁରେ ତୋତେ ଅୟୂଷ ଦେଇଥାନ୍ତୁ—ତୁଇ ପାରିବୁ—
ତୁଇ କିଁା ରହିବୁ ।—ଅ, ଖାଇ ସାରକି—

ଧର୍ମ୍ମା—ତେବେ ନୁହେଁ—ମୁଁ ଏ' ଅଶ୍ଚର୍ଯ୍ୟ ଗୀତ ନ ଶିଖିବାଯାଏ
ଏଠୁଁ ଯାଉଲେବି ହୁଙ୍କିବି ନାହିଁ—ସର । ତୁମେ ଥିବହୋଇ
ଠିଆ ହୋଇଚ କ'ଣ ?—ମାଜଣୀ ସଙ୍ଗେ ଲଗାଅ ନା—
ଏମିତିକା ଗୀତ ଶିଖିବାକୁ କି ତମର ମନ ବଳୁନାହିଁ ?

ସର—ଶିଖିବା ତ ଦୂରର କଥା—ଶୁଣିବାକୁ ମଧ୍ୟ ମୁଁ ଚାହେଁ ନାହିଁ ।

ଧର୍ମ୍ମା—ଏ' କପରି କଥା, ସର ?—ତୁମେ ଗାୟିକା ହୋଇ—

ସର—ଯେଉଁ ଗୀତ ଗାଇ ତୁମକୁ ଶୁଣାଇ ପାରିବି ନାହିଁ—ସେ
ଗୀତ ଶିଖିବାରେ ଫଳ ?

ଧର୍ମ୍ମା—ନିଜେ ଗାଇ ନିଜେ ଶୁଣିବ—ଏତେ ସୁବିଧା ଯେଉଁ ଗୀତର
—ତା'କୁ ଛାଡ଼ିବାକୁ ତୁମର ମନ ବଳୁଚି ନା ?

ସର—ମୋର ଅନନ୍ଦ ପାଇଁ ତ ମୁଁ ଗାଏ ନାହିଁ ।

ଧର୍ମ୍ମା—ଓ ହୋ—ତୁମର ପ୍ରଶଂସା ପାଇଁ ତେବେ ତୁମେ ଗାଅ,
ନା ?

ସର—ସ୍ୱାର୍ଥପର ।

ଧର୍ମ୍ମା—ବେଶ୍ ହେଲା—ଟଗୋଡ଼ ମାଲସ୍ ତ ଆଜ ଏଣିକି କରିବାକୁ ପଡ଼ିବ ନାହିଁ ?

ସର—ଏଡ଼େ କଥା ! ଗୋଡ଼ର ଧୂଳି ଦେବେ ଆଜ୍ଞାଠୁଁ ଏ ଅଭାଗୀର ସାର ହେଲା—

[ ବାଳକର ଗୋଡ଼ଧୂଳି ମସ୍ତକରେ ଦେଇ ପ୍ରସ୍ଥାନୋଦ୍ୟତା ]

ଧର୍ମ୍ମାମା—ସର ! ସର ! ମା' ମୋ'ର—( ଧରିବାକୁ ଯିବା )

ସର—ନା, ମାଉସି—( କ୍ଷିପ୍ରଗତିରେ ବାଳକ-ମାତାର ଚରଣ ସ୍ପର୍ଶ କରି ମସ୍ତକରେ କର ସଞ୍ଚାଳନ ପୂର୍ବକ ପ୍ରସ୍ଥାନ )

ଧର୍ମ୍ମାମା—ଧର୍ମ୍ମୁ ! ଡାକ—ଡାକ ! ଦେଖିଲୁ, କେଡ଼େ ଅଭିମାନରେ ଫିଅଟା ଗଲା—

ଧର୍ମ୍ମା—ବୋଉ ! ଭାରି ନାକକାନ୍ଦୁଣୀ ସେ—ତା'ର ତ କଥା କଥାକେ ଲୁହ—କଥା କଥାକରେ ରୁଷା—ଡାକିଲେ ଅଭିକା ଲଜ୍ଜ ଅଧିକ ମୋଟେ—

ଧର୍ମ୍ମାମା—ଛିଃ, ବାପ—ଦେଖିଲୁ କେତେ ସେ ତୋତେ ଭଲପାଏ ।

ଧର୍ମ୍ମା—ହଁ, ଏତେ ଭଲପାଏ ଯେ, ମୋ ଭଲ ଆଜ ତାକୁ ଭଲ ଲାଗିବ ନାହିଁ ? ଭାରି ହିଂସକୁଡ଼ି ସେ, ବୋଉ—ତା' କଥା—

ଧର୍ମ୍ମାମା—ହିଂସକୁଡ଼ି ନୁହେଁରେ ବାପ—ଅଭିମାନିନୀ; ଅଭିମାନିନୀ ସେ ଗୋଟାଯାକ ଯେ ତୋତେ ନିଜର କରିନେବାକୁ ଚାହେଁ—

ଧର୍ମ୍ମା—ଏ କ'ଣ ଏକୁଟିଆବାହ୍ଣା କଥା ନୁହେଁ, ବୋଉ ?

ଧର୍ମ୍ମାମା—( ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ ) ଏ' କଥା ତୁ କଣ ବୁଝିବୁରେ ପିଲା ?

ଧର୍ମ୍ମା—ଛାଡ଼ ସେ ସବୁ କଥା, ବୋଉ—କହ, ମୁଁ କେମିତି ସେ ଗୀତ ଶିଖିବି—

ଧର୍ମ୍ମାମା—ଯା, ତାଙ୍କୁ ଆଗେ ଡାକିଆଣ—ବୁହେଁ ଏକାସଙ୍ଗେ ବସିବ, ଖାଇବ—ତା' ପରେ—

ଧର୍ମ୍ମା—ସେ' କଣ' ସହଜେ ଆସିବ କି, ବୌ ? ଆହୁରି ଯେତେ-ବେଳେ ଏ' ଗୀତ କଥା ଶୁଣିବାକୁ ସେ ମନା କରନ୍ତି, ତା' ସାମ୍ନାରେ ମୋତେ କେମିତି ସେ କଥା କହିବୁ ଭଲା—?

ଧର୍ମ୍ମାମା—ତୁ ଭାରି ବୁଦ୍ଧା ହେଲୁଣି—କାହିଁକି ଭଲା ଏତେ ଟାଣ, ଟାଣ କରି କହିବାକୁ ଗଲୁ—ଅହା, ଝିଅଟା ମୋ'ର—

ଧର୍ମ୍ମା—ବୌ, ତୁ କହିଦେ କି—ମୁଁ ହାତ, ଗୋଡ଼ଧରି, ନାହିଁତ ଟାଣି ଓଟାରି ତାଙ୍କୁ ଘେନି ଆସିବି ।

ଧର୍ମ୍ମାମା—ପୁଣି ସେହି ଚଗଲା କଥା—

ଧର୍ମ୍ମା—ବୌ ! ତୁ ସବୁ କଥା ଅବୌ ଜାଣୁନା—ଯେତେ ସୁଟିଥାନ୍ତି ପଛକେ, ମୁଁ ଡାକିଚି ଯଦି "ସରି"—ଅଜ୍ କି ସେ ସରି ରହୁଚି, ଏକାବେଳକେ ତରଳି ଘିଅ—

ଧର୍ମ୍ମାମା—ଚଗଲା !—( ସ୍ୱଗତ ) ଚଗଲାଟାର କଥା ଶୁଣି ହସିବି, ନା କାନ୍ଦିବି—ଠାକୁରେ କ'ଣ ସତେ,—ହାୟ ! ଅଜି ଯଦି ସେ ଏଠି ଥା'ନ୍ତେ—( ଦୀର୍ଘ ନିଃଶ୍ୱାସ ତ୍ୟାଗକରିବା )

ଧର୍ମ୍ମା—ବୌ ! କହନା—କେମିତି ସେ ଗୀତ—

ଧର୍ମ୍ମାମା—ଅରେ, ବାପ ! କହିଣ ପରା—ସେ ଗୀତ କେହି କାହାରିକୁ ଶିଖାଏ ନାହିଁ—ନିଜେ ଗାଇ ନିଜେ ଶୁଣିବାକୁ ହୁଏ । ତୁ ତୋ'ର ବାପ ଭଳି ହେବୁ ଯେତେବେଳେ, ଆପେ ଆପେ ପରା ସେ ଗୀତ ତୋ ମନରେ ଜନ୍ମିଲା ଉଠିବ—ତା' ତାଳରେ ତୁ କି ଅଉ ଘର ସଂସାରର ମାୟା ରଖି ପାରିବୁ ? —ତୋର ଦୁଃଖକପାଳୀ ବୌ ର ସ୍ନେହଫାନ୍ଦ କି ଅଉ ସେତେବେଳେ ତୋତେ ( କାନ୍ଦିପକାଇବା )—ନା, ନା,

ଜଗନ୍ନାଥ ସେ ବୁଦ୍ଧି ନ ଦିଅନ୍ତୁ—ତୋତେ ମୁଁ ଛାଡ଼ିପାରିବି ନାହିଁ ରେ—ସେ ଅଙ୍କ ବି ୧୨ ବର୍ଷ ହେଲା ଘର ସଂସାର, ପୁଅ ମାଇପ ଭୁଲି ରହିଲେଣି—ମୁଁ ଭୁଲି ରହିଛି ସିନା ତୋ'ର ଏହି ଚାନ୍ଦମୁହଁ ଦେଖିକି ରହି ।—

ଧର୍ମା—ଓଃ । ପିତା । ପିତା । ମୋର ଜନ୍ମ ସଙ୍ଗେ ସଙ୍ଗେ କ'ଣ—

ଧର୍ମାମା—ସେ ଭାଗ୍ୟ କି ତାହିଁ ତୋ'ର ପିତାର ହୋଇଥିଲା ରେ ବାପ—ତୁ ଯେ ଅଠମାସରଟି ଗର୍ଭରେ ଥାଉ—

ଧର୍ମା—ଜନ୍ମ ସୁଦ୍ଧା ମୋ'ର ହୋଇ ନଥିଲା ।—ଓଃ ।—( ଅଶ୍ରୁ-ସମ୍ବରଣ )

ଧର୍ମାମା—ମନେ ପଡ଼ିଯାଉଛି ରେ ସେଦିନ ପର—ତୋର ବାପ ସୁଅଦଶିଆ କରିବ ବୋଲି କେତେ ଆଶା କରିଥାଏ—ସବୁ ଆୟୋଜନ ଠିକ୍ ଠାକ୍—ସତପାହିଲେ ଉଚ୍ଛବ—ସଖାଳ କେମିତି ହବ ବୋଲି ଆଖିରେ ତାହାର ନିଦ ନାହିଁ—ସତ ଘଡ଼ିଏ କି ଦି' ଘଡ଼ି ଅଛି—ଆଉ ସମ୍ଭାଳି ପାରିଲି ନାହିଁ—ଉଠି, ଯେ ଯା ଯୋଗାଡ଼ରେ ଲାଗିଯାଇଛୁ—ଏଣେ କେତେବେଳେ ଯେ ସିନ୍ଦୂର ଫାଟିଛି—ଆଉ ସଙ୍ଗେ ସଙ୍ଗେ ନାଚଗୀତ ବାଜିଛି—

ଧର୍ମା—ଯୁଦ୍ଧକୁ ଡାକରା ପଡ଼ିଲା ପରା ?—ତେବେ କ'ଣ ବାପା ମୋ'ର ଯୁଦ୍ଧକୁ ଯାଇ—

ଧର୍ମାମା—ଆରେ ବାପ, ଏ' ଯେ ଯୁଦ୍ଧରୁ ଅଧିକ—ଯୁଦ୍ଧ ହୁଏ ସିନା ଲୋକ ଲୋକ ଭିତରେ, କି ଦେଶ ଦେଶ ଭିତରେ, କି ଜାତି ଜାତି ଭିତରେ; କିନ୍ତୁ ଏ ଯେଉଁ ଯୁଦ୍ଧ—ଏ' ଏକ ଭୟାନକ ଯୁଦ୍ଧ—ଦେବତା ସଙ୍ଗେ ମାନବର ଯୁଦ୍ଧ । ମହା-ରାଜାଙ୍କର ହୁକୁମ୍ ହେଲା—ଗାଁ ଗାଁ, ଘର ଘର, ଜଣ ଜଣ କରି ଜଣାଇ ଦିଆଗଲା—

"ଆସ ହେ ଯେଉଁଠି ଅଛ ଭାଇ ବନ୍ଧୁ ସର୍ବେ
ପିଲା ବୁଢ଼ା ଭେଣ୍ଡା ଅବା ନାହିଁଟି ବିଗୁଣ,
ଛୁଣ୍ଡାହୁଅ ଯାଇଁ ଗୃନ୍ତେ ଚନ୍ଦ୍ରଭାଗା ତୀରେ;
ହେବ ଈଶ୍ୱର ସେଠାବେ,
ଦରିଆ ମଝିରେ,
ସାତଭାଲ ପାଣି ଯହିଁ ଖେଳେ,
ଦେଉଳ ଏମନ୍ତ,
କୃଷ୍ଣ ଭ୍ରମ ଦେଖି ଯାଅ,
ନିନ୍ଦବେ ଅଲକାପୁରୀ ଦେବତା ସକଳ ।

ଧର୍ମା—ବୌ । ବୌ । କେଉଁଅଡ଼େ ଚନ୍ଦ୍ରଭାଗା ?—କେତେଦୂରେ ?
କେମିତିକା ମନ୍ଦର ସେ ?—କେଡ଼େ ସୁନ୍ଦର ହୋଇ ନଥିବ !
ଦେଶର ସବୁ ବଢ଼ାଣୀ ମିଶି ଗଢ଼ିଚନ୍ତି ଯେତେବେଳେ—ବାର
ବର୍ଷକାଳ, ଘର ଦ୍ୱାର ଭୁଲି ଦିନ ରାତି କାମହୋଇଚି ଯେତେ-
ବେଳେ, ତେତେବେଳେ କି କାମ ସେ ହୋଇ ନ ଥିବ !
କାମ ସରିଚି ନା ବୌ ?—

ଧର୍ମା ମା—( ନିଃଶ୍ୱାସ ଛାଡ଼ି ) କାମ ସରିଥିଲେ ତ ବାପା ତୋର
ଫେରି ଥାନ୍ତେ ରେ—

ଧର୍ମା—ବାପା ଫେରିଥାନ୍ତେ । (ସାଶ୍ଚର୍ଯ୍ୟେ ମାତାଅଡ଼କୁ ଚାହିଁ ରହିବା)

ଧର୍ମା ମା—ଏମିତି ଚମ୍କି ଉଠିଲୁ କାହିଁକି ରେ, ବାପ ?
( କୋଳକୁ ଟାଣି ଆଣି ବାଳକ ଗାତ୍ରରେ ଛେପ ପକାଇବା )

ଧର୍ମା—(ହଠାତ୍ ସ୍ୱପ୍ନୋତ୍ଥିତବତ୍ ) ବୌ । ବୌ । ଅଉଥରେ
କହ—"ବାପା ଫେରିଥାନ୍ତେ"—"ବାପା ଫେରିଥାନ୍ତେ" ।

ଧର୍ମା ମା—ହଁରେ ବାପ—ନିଶ୍ଚୟ ଫେରିଥାନ୍ତେ ।

ଧର୍ମା—ନିଶ୍ଚୟ ଫେରିଥାନ୍ତେ ।—(ତେଇଁ ଉଠିବା)

ଧର୍ମ୍ମା ମା—ଜଗନ୍ନାଥ କରନ୍ତୁ, ଜଲ୍‌ଦ ସେ ଫେର ଆସନ୍ତୁ—
ଓଃ—ବାପକୁ ଦେଖିବାକୁ—

ଧର୍ମ୍ମା—ବାପାକୁ କେବେ ଦେଖିବ, ବୌ ? ( କରତାଳଦେଇ ନାଚ ନାଚ ) ବାଃ—ବାପା ମୋର ବଞ୍ଚିଛନ୍ତି—ବାପା ମୋର ଦେଉଳ ଗଢ଼ୁଛନ୍ତି—ବାପା ମୋର ଜଲ୍‌ଦ ଫେର ଅସିବେ ।— ( ରାମା, ଶାମା ପ୍ରଭୃତ ବାଳକବୃନ୍ଦର ପ୍ରବେଶ ) ରାମାଭାଇ ।— ଶାମାଭାଇ । ଅଜ ମୋତେ ଅଣବାପୁଆ ବୋଲ୍ ଗାଳ ଦେଇ ପାରବ ନାହିଁ—ବାପା ମୋର ବଞ୍ଚିଛନ୍ତି—ବାପା ମୋର ଦେଉଳ ଗଢ଼ୁଛନ୍ତି—ବାପା ମୋର ଜଲ୍‌ଦ ଫେର ଅସିବେ ।—ବୌ । ବୌ । ମୁଁ ବାପାଙ୍କ ପାଖକୁ ଯିବ—କାମ ଦେଖିବ—କେତେ କଥା ଶିଖିବ—ଜଲ୍‌ଦ ବାପାଙ୍କୁ ଫେରାଇ ଅଣିବ ।

ଧର୍ମ୍ମା ମା—(ସ୍ୱଗତ) ପିଲାଟା ମୁଣ୍ଡରେ ଏ' ଖରାପ ଖିଆଲ ପଶିଥିଲା କପର ? ମୋ'ର ତ ଦୋଷ—ମୁହିଁ ତ ସେ ବଷୟରେ କଛି ହେଲେ କେବେ କହୁନାହିଁ—(ପ୍ରକାଶ୍ୟେ) ଅଚ୍ଛା ବାପ । ତୋ ମନରେ ଯଦ କେବେ କଛି ସନ୍ଦେହ ହୋଇଥିଲା, ତାହିଁକ ମୋତେ—

ଧର୍ମ୍ମା—ବୌ । ବୌ । କଥା ସତ ହୋଇଥିଲେ, ତୋ' ମନରେ କେତେ କଷ୍ଟ ଦେଇ ନ ଥାନ୍ତି ଭଲା ?—ଗୁରୁ ପରା ଅମକୁ ବରାବର ମନା କରଥାନ୍ତି—"ମା, ବାପ ମନରେ କେବେ ହେଲେ କଷ୍ଟ ଦେବ ନାହିଁ । ସେମାନେ ଦେବତା ସଙ୍ଗେ ସମାନ ।"

ଧର୍ମ୍ମା ମା—ମରଯାଏଁରେ, ଧନରେ ମୋର । ( କୋଳକୁ ଟାଣିଅଣି ଚୁମଖାଇବା ) ପିଲାମାନେ । ତୁମେମାନେ ଧନକୁ

ମୋ'ର ଏମ୍ତିକା କହ୍ନ କଷ୍ଟଦେବା ଅପେକ୍ଷା, ମୋତେ ପଗ୍ଗର ଥରେ ବୁଝିଲ ନାହିଁ କାହିଁକ ?

ରମା—ମାଉସି ! ଅମେ ଗେଲରେ କହୁଥିଲୁ ନା ?—ସାଇ ପଡ଼ୋଶୀ ସମସ୍ତେ ତ ସେହ୍ନକଥା—

ଧର୍ମ୍ମା ମା—କହ୍ନବେ ତ'—ଏ'ତ ଆଉ ତୁମର ବାପ ଖୁଡ଼ୁତାଙ୍କ ଭଳ ଖାଲ୍ କାରଗର ନୁହନ୍ତ—ଏ' ହେଲେ ସମସ୍ତଙ୍କ ଉପରେ ସର୍ଦ୍ଦାର—

ଧର୍ମ୍ମା—ସର୍ଦ୍ଦାର !

ଧର୍ମ୍ମା ମା—ସବୁ ଝୁଙ୍କି ଏ'ଙ୍କ ମୁଣ୍ଡରେ । ଶଠି ଖଣ୍ଡେ ଲେଖିବାକୁ ଟ ଫୁର୍ସତ୍ ନ ଥାଏ—ବର୍ଷକେ ବୁଇବର୍ଷକେ ଥରେ ଘରକୁ ଫେରିଆସିବା କଥା ପଗ୍ଗରେ କିଏ ? ଦାନା, କନାପଞ୍ଚା, ଭଲ ମନ୍ଦ ଖବରତ ସବୁ ରଜାଙ୍କ ଲୋକେ ବୁଝିବେ—ତାଙ୍କର ପାଖରୁ ପୁଣି ଯେତିକି ଖବର ମିଳବ ତେତିକି—ହାୟ ! ମୋ'ର ମିନା ପୋଡ଼ାକପାଳ—

ଧର୍ମ୍ମା—ତୋ'ର ପୋଡ଼ାକପାଳ, ବୌ ?—ତୋଠୁଁ ଭାଗ୍ୟବତୀ ତେବେ କିଏ, ବୌ ?—ବାପା ମୋର ସର୍ଦ୍ଦାର—ବାପାଙ୍କ ମୁଣ୍ଡରେ ସବୁ ଝୁଙ୍କି—ଯାଠୁଁ ବଳ ଭାଗ୍ୟ ଆମର ଅଛି ନା ?

ଶାମା—ଆ' ରମାଭାଇ, ଉଚ୍ଚୁର ହେଉଚ—ଚନ୍ଦନ ପୋଖରୀରେ ଭାଇ ମାଛ ବଢ଼ଲିଛିରେ, ଧରମା—ଧରିଯିବୁ ଯେବେ ବେଗେ ଆ ।

ଧର୍ମ—ନା, ଭାଇ—ମୁଁ ବାପାଙ୍କ ପାଖକୁ ବାହାରିଚ—ବାପାଙ୍କୁ କେମ୍ତି ଦେଖିବ ବୋଲ୍ ମନ ଯେ ମୋ'ର ଅଉ କାହିଁରେ ନାହିଁ ।

ରମା—ଅସ ହେ—ଏ' ଏକଜଦଅ କ'ଣ ଅସିବ କି ?

ଶାମାଁ—( ଏକାନ୍ତେ ) ରମା ଭାଇ ! ଅଜ ତ ସେ ଟୋକାଙ୍କୁ ଦେଖା ନାହିଁ କାହିଁକି ?

ରମା—( ଏକାନ୍ତେ ) ନ ଅସିଥିବ ପୁଣି ?—ଚୁଲ୍, ଚୁଲ୍—

( ବାଳକମାନଙ୍କର ପ୍ରସ୍ଥାନ )

ଧର୍ମ୍ମ—ବୌ ! ବୌ ! ଅଜ୍ ମୋ ଖୋଡ଼ ଭଲେ ଲାଗୁନାହିଁ—ମତେ ଜଲ୍‌ଦି ବସ୍ତା ବଡାଇ ଦେ—ମୁଁ ସିନା ଏ'ଠି—ମୋ ମନ ଯାଇ ବାପାଙ୍କ ପାଖରେ—ବାପା ଦେଖିବାକୁ କେମ୍-ତଜା ବୌ ?—ମୋତେ ଚିହ୍ନି ପାରିବେ ତ ?—କ'ଣ କହିଲେ ବାପା ମୋତେ—

ଧର୍ମ୍ମମା—( ନୀରବରେ ଲୁହ ପୋଛିବା )

ଧର୍ମ୍ମ—ଛି, ବୌ ! କାନ୍ଦୁଛୁ ?—ଥାଉ, ଥାଉ—ମୁଁ କ'ଣ ବାପାଙ୍କୁ ଚିହ୍ନି ପାରିବ ନାହିଁ ? ବାପା କି ନ ଚିହ୍ନି ମୋତେ ରହି ପାରିବେ ?—

ଧର୍ମ୍ମ ମା—(ସ୍ୱଗତ) ଦେଖ, ଦେଖ, ନାଥ—

ତୁମ୍ଭର ଶ୍ରୀମୁଖ ଶୋଭା—
ତୁମ୍ଭର ବରଣ ଅଭା—
ଫଳିଅଛି ଦରପଣେ କିବା,
ନବନୀତ ଏହି ଶିଶୁ ଅଙ୍ଗେ ଅଙ୍ଗେ—

(ପ୍ରକାଶ୍ୟେ)—ଛି, ପାଗଳ !—

ଧର୍ମ୍ମ—ସତେ, ସତେ ବୌ, ମୁଁ ପାଗଳ ହୋଇଯିବ, ଯଦି ବାପାଙ୍କ ପାଖକୁ ଜଲ୍‌ଦି ମୋତେ—( ହଠାତ୍ ତୁନିହୋଇ ଶୁଣିବାର ଅଭିନୟ କରିବା )

ଧର୍ମ୍ମ ମା—(ସ୍ୱଗତ) ଅଚ୍ଛା ଜଗର ଧଇଲା ତ—

ଧର୍ମ୍ମ—ବୌ ! ବୌ ! ଶୁଣିଲୁ—ଶୁଣିଲୁ—କି ଗୋଟାଏ ସଙ୍ଗୀତ ଭାସି ଆସୁଛି—ନା ?

ଧର୍ମ୍ମ ମା—(ସ୍ୱଗତ) ମୁଁ ଗୃଣ୍ଡାଗୁଣୀ କ'ଣ କଲି ? (ପ୍ରକାଶ୍ୟେ) କାହିଁ ?—କେଉଁଠି ?—କିଛିତ ନାହିଁ—ଅ—ଆଇଲୁ. ଭାତ ଗଣ୍ଡାକ ଖେଇଣ ଶୁଅ ଯିବଣି ।

ଧର୍ମ୍ମ—ବୌ ! ବୌ ! ତୁ କଣ ଏହି ସଙ୍ଗୀତ କଥା କହୁଥିଲୁ ?—

ଧର୍ମ୍ମ ମା—କାହିଁ ?—କେଉଁଠି ମ ?—ଆ ଅଇଲୁ—

ଧର୍ମ୍ମ—ତୁ କଣ କିଛି ଶୁଣିପାରୁ ନାହୁଁ, ବୌ ?—ତୁନିହୋଇ ଥରେ କାନ ଡେରିଲୁ, କେମିତିକା ପବନରେ ମିଳେଇ ମିଳେଇ ଆସୁଛି—ଯେମିତିକା ଖୁବ୍ ଦୂରରୁ—କେଉଁ ଅଜଣା ରାଇଜରୁ ଭାସି ଭାସି ଆସୁଛି ! ସବ ଥାନ୍ତା କି ? (ହଠାତ୍) ବୌ ! ବୌ ! ମୁଁ ଯାଉଚି, ସବୁକୁ ଡାକି ଆଣେ, ସେ ଅଇଛିକା ବୁଝେଇ ଦବ, କି ଗୀତ—କେଉଁଠୁ—ଅହା ! ସବୁକୁତ ମୁଁ ଏ' ପର୍ଯ୍ୟନ୍ତ କହି ନାହିଁ—ଶୁଣିଲେ ସେ ଯେ କେଡ଼େ ଖୁସି ହେବ !—ସବ ! ସବ ! ବାପା ମୋର ବଞ୍ଚିଛନ୍ତି—ବାପା ମୋ'ର ଜଲ୍‌ଦି ଫେରି ଆସିବେ—(ନାଚ ନାଚ ପ୍ରସ୍ଥାନ)

ଧର୍ମ୍ମ ମା—ସତେ ସତେ ପିଲାଟା ପାଗଳ ହେଲା ନା କ'ଣ ?—କେମିତ ତାକୁ ଭଣ୍ଡାଭଣ୍ଡି କରି ରଖୁଚି—ମୁଁ ଗୃଣ୍ଡାଗୁଣୀ ଅଚ୍ଛାକଥା ପକାଇଲି ଆଜି—ବାପା ତା'ର ଠିକ୍ ଏହିପରି ବେଳେ ବେଳେ ବାୟା ହୁଏ, ପୁଅ ଆଜି ଭଲ ହେବ କେଉଁଠୁ—!(ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ) ଯାଏଁ ପିଲାଟାକୁ କେମିତ ଭଣ୍ଡାଭଣ୍ଡି କରି—ରହ, ସବୁକୁ ତ ଯାଇଚି ଡାକି, ଡାକି ଆଣୁ, ତା'ର ହାତରେ ସବୁ କଥା—ଅହା ! କୁହଙ୍କ ଭିତରେ ଅଇଛିକା ଛଡ଼ାଛଡ଼—ଅଇଛିକା ପୁଣି ମିଳାମିଳି—

ପ୍ରେମର ସ୍ୱର୍ଗ ଏହିପରି ସିନା । ( ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ ପ୍ରସ୍ଥାନ )

( ବାଳକ-ମାତା ଓ ବାଳକର ପ୍ରବେଶ )

ସର ମା—କି ଲୋ – ଆଜ କେତେଥର ମୋତେ ଘୋଷାଡ଼ିବୁ କି ? ଏ' ଛୁଗ୍ରଅନା ବଣ ଟଗୋଟାକ ତ ବୁଲାଇ ମାରିଲୁଣି – କାହିଁ ସେ କୁଞ୍ଜବନ ? – କୁଞ୍ଜବନରେ କୁଞ୍ଜଲୀଳା ଲଗିଛି ପରା । କାହିଁଗଲା ସେ ଛେଳଣ୍ଡ ? –

( ବାଳକର ସାନନ୍ଦେ ନାଚି ନାଚି ପ୍ରବେଶ )

ଧର୍ମ୍ମ—ଆଜ ମୁଁ ଛେଳଣ୍ଡ ନୁହେଁ, ମାଉସି—ବାପା ମୋ'ର ବଞ୍ଚିଛନ୍ତି – ବାପା ମୋର ଦେଉଳ ଗଢ଼ୁଛନ୍ତି – ବାପା ମୋ'ର – ଏ' କଣ ସର ? ତୁମେ କେଉଁଠି ଉଠୁନାହିଁ ଯେ – ମୋ ସଙ୍ଗେ ସଙ୍ଗେ ତାଳଦେଇ ନାଚୁନାହିଁ ଯେ ? ଏଁ, ମୋର ଏପରିକା ସୁ-ଖବର ତୁମକୁ ଦେଲି – ହସ ବି ଟିକିଏ ନାହିଁ ? ମୁହଁଟା ହାଣ୍ଡିକର ଠିଆ ହୋଇଚ ? – ଏତେ ହିଂସୁକି ନା ତୁମେ ?

( ବାଳିକା ଶଙ୍କଲାନ୍ତର ଗୋପନୋଦ୍ଦେଶ୍ୟରେ ମୁହଁ ବୁଲାଇଦେବା )

ହଁ, ମୁହଁ ପୁଣି ବୁଲାଇ ନିଆ ହେଉଚି –

ସର—(କାନ୍ଦପକାଇବା ଓ ବାଳକ ଟେକିବାକୁ ଯାଇ ନିରସ୍ତହେବା)

ଧର୍ମ୍ମ—ସର । କାନ୍ଦୁଚ ? ଛି, ଛି, ସର । ସେହି କଥାଟା ଗୋଟାଏ ଗଣ୍ଠି କରି ବସିଚ ନା ? ମୋର ସରଟି ପରା –

( ସସ୍ନେହେ ଚୁମ୍ବନ କରିବାକୁ ଯିବା )

ସର ମା—( ସକୋପରେ ଟାଣି ଆଣି ) ହାଁ, ହାଁ, – ଏତେ ଢମାଳ୍ ତୋ'ର, ଟୋକା ? ଟିକିଏ ଲାଜସରମ ବି ନାହିଁ ? — କାରେ, ତାକୁ କ'ଣ କରି ପାଇଲୁ କି ? – ସେ କ'ଣ –

ଧର୍ମ୍ମ—ଏ' କଣ କହୁଚ, ମାଉସି ?

ସର ମା—କହୁଚ ତୋ' ମୁଣ୍ଡ ଆଉ ଗଣ୍ଡି । ଅରେ ସାପଖିଆ, ବାଡ଼ପଡ଼ା । ତୋତେ କଣ ଖୋଜି ଖୋଜି ମରିବାକୁ ଥାନ ମିଳିଲା ନାହିଁ ? ହାଟୁଆ ବାଟୁଆ ଘରେ ଏ'ଙ୍କ କଥା ଲେ ମା । ଏ' ମଲାଟାପାଇଁ ମଣିଷ ଦାଣ୍ଡଘାଟ କରିପାରିଲା ନାହିଁ—ଯେଉଁଠିକି ଯାଅ, ସେହିକଥା—ଅଲେ ଟୋକି । ତୁ ପୁଣି କେଲୁଣୀଙ୍କ ଭଳି ଗୀତ ଶିଖିଲୁ କେଉଁଦିନୁ ମ ?—କାହିଁ ସେ ଟୋଟା ?—ମଲା ମୋ'ର – କୁଞ୍ଜବନରେ କୁଞ୍ଜଲୀଳା –

ଧର୍ମ୍ମା—ମାଉସି । ମାଉସି । ଯା' ତା' ଗୁଡ଼ାଏ ବକୁଯାଅ ନାହିଁ—କିଏ କଣ କହୁଚି –

ସର ମା—ସବୁ ମିଛ – ସବୁ ମିଛ – ଅରେ ସତିଆ ଗାତପଣା । ଆଖିରେ ଯା ଦେଖିଲି ତା ବି ମିଛ ?–ଓ ହୋ । ପିଲ ଟିକେନାକୁ – ଗାଲ ଚିପିଦେଲେ ଦୁଧ ବାହାରିବ, ଦେଖ ଏ'ଙ୍କର ଗୁଣ—ଅରେ କାଳିଆ ଭୂଆଁ । କୃଷ୍ଣ ହେବୁ ଯଦି, ଗୋପପୁରକୁ ଯା—ଏ' ନେରସ୍ତିଆ ଗାଁରେ ସେ ସବୁ ଚଳିବ ନାହିଁ –

ଧର୍ମ୍ମା – ମାଉସି । ମାଉସି । ପୁଅଟାକୁ ତୁମର –

ସର ମା—ଯା, ଯା, ଯା ।—ତେର ତେର ପୁଅ ଦେଖିଚି – ସେ ଘରଡାଖାର ପାଖେ ହଲେଇ ହବୁ ଯେ ସୁନ୍ଦର ଦଶିବ – କୁଅଡ଼େ କଣ କରି ଗୋଟାଏ –

ଧର୍ମ୍ମା – ସେତିକିରେ କ୍ଷମାଦିଅ, ମାଉସି – ଅଉ ଦଣ୍ଡେ ମୁଁ ଠିଆ-ହେବି ନାହିଁ—ସ-ର । – ନା – ନା – ଓଃ । ( ଫେରିଚୁହିଁ ବେଗେ ପ୍ରସ୍ଥାନ )

( ଇତମଧ୍ୟେ ବାଳିକା-ମାତା, ବାଳକ କଥା ଶେଷ ନ କରୁଣୁ, ବାଳକର ଗଠିତ ସେହି ପ୍ରସ୍ତର ମୂର୍ତ୍ତିଟା ଦେଖି କୁଞ୍ଜବନ ମଧ୍ୟେ ହଠାତ୍ ପ୍ରବେଶ କଲା )

ସର—ଭାଇ ! ଭାଇ—( ଅଣୀରେ ଅଣି ମେଳ ହେବାରୁ, ଅନୁଧାବନ କରୁ କରୁ. ଅତ୍ୟଧିକ ଅବେଗରେ ପତନ ଓ ବାଳକା-ମାତାର ବେଗେ ପ୍ରବେଶ )

ସର-ମା—ଏଁ, ଏଁ, ଝିଅଟା ଏମିତ ପଡ଼ଗଲ୍ କାହିଁକ ? - ଟୋକାଟା ମାରିକରି ପଳାଇଲ୍ ନା, କଣ ? ସର ! ସର !

ସର—ନା, ନା, ଝୁଣ୍ଟି ପଡ଼ୁଥିଲ, ବୌ । ( ହଠାତ୍ ଉଠିବା )

ସର-ମା—ମିଛକଥା, ମିଛ କଥା—ରହ, ରହ, ସମା ଶାମାକୁ କହ ତା'ର ଠେଙ୍ଗିଣି ଅଜ ଭାଙ୍ଗି ଦେଉଚ ।

ସର—ନା, ନା, ବୌ ! —ସେ—( ଅବେଗ ଓ ଲଜ୍ଜାରେ ରୁଦ୍ଧକଣ୍ଠ ହେବା )

ସର-ମା—ରଖ, ରଖ ତୋ'ର ସେ ଛୁଣ୍ଡାଳଗିରି । ତୋଟାର ସନ୍ଧାନ ଏଥର ପାଇଲଣି ଯେ—ମୂର୍ତ୍ତି ଦେଖ, ପୁଣି ଗଢ଼ାହୋଇଚ, ଠିକ୍ ଏକାବେଳେ ଟୋକାର ନକଲ—

ସର—ବୌ, ବୌ ! ( ଏହ ଅଜ୍ଞାତପୂର୍ବ ଦୃଶ୍ୟରେ ବିହ୍ୱଳିତ ହୋଇ କାନ୍ଦିବା )

ସର-ମା—( ଲୁହ ଦେଖି ) ହିଁ—ଏତେଦୂର !—ରହ, ରହ, ସମା, ଶାମାକୁ କହ ବଣ ଗୋଟାଯାକ ଯଦ ପୋଡ଼ ନ ଦେଉଚ, ମୋ ନା' ସରଅମା ନୁହେଁ—ଅ' ଟୋକା—

( ମୂର୍ତ୍ତି ସହତ ସରକୁ ଟାଣି ଘେନ ପ୍ରସ୍ଥାନ )

( କଛୁକ୍ଷଣ ପରେ ବିପରୀତ ଦଗରୁ ବାଳକ-ମାତାର ପ୍ରବେଶ )

ଧର୍ମା ମା—ଏତେବେଳଯାଏ କ'ଣ କରୁଚ ଟୋକା ?

ଧର୍ମା—( ପ୍ରବେଶକରି ) ଏହ ଯେ ବୌ । ଘରେ ତାଲଦେଇ କୁଆଡ଼େ ଯାଇଥିଲୁ କ ?

ଧର୍ମା ମା—ଡେରି ଦେଖି, ତୋତେଇ ତ ଡାକବାକୁ ବାହାରିଥିଲ,

ବାପ—ସବ କାହିଁ ? ମୁହିଁ ତୋ'ର ଏମିତ ଶୁଖିଯାଇଛି ଯେ ?—ସବ ଅଇଲ ନାହିଁ କି ? ଭାର ଅଭିମାନ ହୋଇଛି ତା'ର—ନା ? ଅଚ୍ଛା ମୁଁ ନିକେ ଅବର୍ଜଲ ତା' ଘରକୁ ଯାଇ—

ଧର୍ମ୍ମ—ନା, ନା. ବୌ ! ତୁ ଅଜ ତା' ଘରକୁ ଯିବୁନାହିଁ—

ଧର୍ମ୍ମ ମା—ଛି, ଏମ୍‌ତ ବ୍ରଗନ୍ତ୍ର କି ?—ଦେଖିଲ୍ଲ, ତା ମନରେ—

ଧର୍ମ୍ମ—ତା' ମନରେ କିଛି କଷ୍ଟନାହିଁ, ବୌ ! ( ଆକୁଳସ୍ୱରେ ) କଷ୍ଟନାହିଁ । କଷ୍ଟ ନାହିଁ ।—ଓଃ—( କାନ୍ଦପକାଇବା )

ଧର୍ମ୍ମ ମା—କାନ୍ଦଲ୍ଲ ଯେ ?—

ଧର୍ମ୍ମ—ତାକୁ ଅଜ କନ୍ଦାଇଚ ବୋଲ୍—ନା, ନା ଅହୁରି କନ୍ଦାଇବ, ଯଦ ମୁଁ ଏଠି ରହେ ।—ବୌ ! ବୌ ! ମତେ ଅଜ—ନା, ଏହିକ୍ଷଣି ବଦାୟ କରଦେ—ମୁଁ ବାପାଙ୍କ ପାଖକୁ ଗୃଲ୍‌ଯାଏ—ମୋର ପାଇଁ ସିନ —( କାନ୍ଦ ପକାଇବା )

ଧର୍ମ୍ମ ମା—ଥାଉ, ଥାଉ, ବାପ—ତୁନ ହ'—( ବାଳକର ଲୁହ ପୋଛୁ ପୋଛୁ ଦୀର୍ଘନିଃଶ୍ୱାସ ଛାଡ଼ି ) ପ୍ରୀତର ସ୍ରିତ ଏହିପର ସିନା ! କେତେବେଳେ ହସାଏ, କେତେବେଳେ କନ୍ଦାଏ—କ୍ଷଣକେ ମିଳାଏ, କ୍ଷଣକେ ଛଡ଼ାଏ—କିନ୍ତୁ ଉଭୟରେ କି ଗୋଟାଏ ଅନନ୍ଦ ନ ଥାଏ ?—ଅହା ! ସତେ କି ଠାକୁରେ ମୋର ଧର୍ମ୍ମୁ ଅଜ ସରକୁ—

ଧର୍ମ୍ମ—ବୌ ! ବୌ ! ଜାଳ ଦେ ନା, ଜାଳ ଦେ ନା—ଯେଉଁ ନିଅ ଲିଭାଇବାକୁ ଯାଉଛୁ, ତାକୁ ଫୁଙ୍କି ଜାଳ ଦେ ନା !—ଅଜ ଏଠି ଦଣ୍ଡେ ମୁଁ ରହିପାରବ ନାହିଁ, ବୌ—ଜଲ୍‌ଦ ବଦାୟ କରଦେ । ବାପାଙ୍କୁ ଦେଖୁ ଦେଖୁ, ବାପାଙ୍କ ସଙ୍ଗେ କାମ

କରୁ କରୁ, ବାପାଙ୍କର ସେହି ସବୁପାଶୋଗ ଗୀତ ଶୁଣୁ ଶୁଣୁ, ମୁଁ ସବୁ ଭୁଲିଯିବ, ସବୁ—ଯା ଦେଖୁଚ, ଯା ନ ଦେଖୁଚ—ଯା ବୁଝୁଚ, ଯା ନ ବୁଝୁଚ—ତେବେ ବ, ତେବେ ବ ମୋ'ର ସ-ର-ଳୁ କ—( କ୍ରନ୍ଦନ )

ଧର୍ମ୍ମ। ମା—ରହ, ବାପ—ମୁଁ ଏହିକ୍ଷଣି ସରଳୁ ଧର—

( ପ୍ରସ୍ଥାନୋଦ୍ୟତା )

( ସରଳ ବେଗେ ପ୍ରବେଶ )

ସର—ଧରିବାକୁ ହେବନାହିଁ, ମାଉସି—ସେ ଯେ ଅପେ ଅପେ ଧରା ଦେଉଛୁ—କିଏ ଅଟକାଇ ରଖିବ ?—କା'ର ଏତେ କ୍ଷମତା ?—ମାନ ଅଭିମାନ ବେଳେ ବେଳେ ବାଧା ଦିଏ—ନା ନା, ବାଧା ତ ନୁହେଁ—ଏ' ଯେ ଆକର୍ଷଣର ପ୍ରତି-ଆକର୍ଷଣ—ଘାତର ପ୍ରତିଘାତ, ନୁହେଁ ଭାଇ ? ତୁମେଇ ତ ଦିନେ ମୋତେ ପୋଥିପଢ଼ି ବୁଝାଉଥିଲ. ଏ ବନ୍ଧ ସମ୍ବନ୍ଧ କେବଳ ଏଇଥିପାଇଁ ସିନା ?

ଧର୍ମ୍ମ। ମା—ଆସ, ଘରକୁ ଆସିଲ, ଭାଡଗଣ୍ଡାକ ତେବେ ଖୁସି ନିର୍ମାଲ୍ୟ ହୋଇ ଯିବଣି ।—ସର. ଲକ୍ଷ୍ମୀ ଟିଅଟି ମୋର—ମୁଣ୍ଡ ଖା, ଆଉ ପଳେଇ ଯିବୁ ନାହିଁ—ସେ ଅଡ଼ବାଡ଼ୁଆଟାର କଥା ତାହିଁକି ଶୁଣ୍ଡୁ ? ଆସ ଦୁହେଁ, ହାତ ଧରାଧରି ହୋଇ ଆସିଲ — (ସର ବାଳକର ହାତ ଧରିବା) (ସ୍ୱଗତ) ଜଗନ୍ନାଥ । ସତେ କ'ଣ ( ଦୀର୍ଘନିଃଶ୍ୱାସ ତ୍ୟାଗ ) – ଅସ, ବେଗେ ଅସତ. ମୁଁ ତେଣେ ବଢ଼ାବଢ଼ି କରେ ଯାଇଁ । ( ପ୍ରସ୍ଥାନ )

ସର—ଭାଇ । ଭାଇ । ଭୁଲିଯାଅ, ଭୁଲିଯାଅ—ମୋ'ଠ ପାଇଁ, ମୋତେଇ ଗୁହିଁ—ବୌ'ର ସେହି ନିର୍ଦ୍ଦୟ ବ୍ୟବହାର ।

ଧର୍ମ୍ମ—( ବସ୍ତ୍ରାବୃତ ନେତ୍ରରେ ଏ ପର୍ଯ୍ୟନ୍ତ ସରକୁ ଗୁହିଁ ରହିଥିଲ—ତା' ପରେ ସସ୍ମିତେ କହିଲ ) ସେହି ନିର୍ଦ୍ଦୟ ବ୍ୟବହାର ଯୋଗୁଁ ସବର ଏହି ସଦୟ ବ୍ୟବହାର ସିନା ?

ସର—ଆଉ ଲଜ୍ଜା ଦିଅନା, ଭାଇ—

ଧର୍ମ୍ମ—ଲଜ୍ଜାର ବନ୍ଧକୁ ନିଜେ ଭାଙ୍ଗି, ପୁଣି ଲଜ୍ଜାର ଭୟ ?

ସର—ଭାଇ, ଭାଇ—

ଗୀତ

ସେ ଯେ ତୁମ୍ଭର ଗୁଣେ, ତୁମ୍ଭର ଟାଣେ,
ଚଳଇ ତନ୍ତ୍ରୀ ଖରେ ଜାଣେ ।
କାଣେ ନା, କାଣେ ନା          କେ ମନା ଅମନା—
ଭାସିଯାଏ କାହିଁ               ନାହିଁ ମୋତେ ଜଣା—
ସମ୍ଭିତ୍ତୁ ପ୍ରାଣ, ଏତେକ କାଣେ ।

ଧର୍ମ୍ମ—( ତେଇଁ ଉଠି ) ଶୁଣ, ଶୁଣ, ସର—ସେହି ସଙ୍ଗୀତ—ସେହି ମହାସଙ୍ଗୀତ !—ତୁମ୍ଭର ଏହି ସାମାନ୍ୟ ସଙ୍ଗୀତକୁ କେଉଁ ଅତଳ ଗର୍ଭରେ ଜୁବାଇ ଦେଇ, କାପର ମୂର୍ଚ୍ଛନା ତା'ର ଦିଗ୍ ଦିଗନ୍ତ ମୁଖରିତ କରିଉଠୁଛି । ଓଃ—ହୃଦୟ ତନ୍ତ୍ରୀରେ ଏ' କି ଝଙ୍କାର—ଆଉ ଯେ ଠିଆହୋଇ ପାରୁନାହିଁ—ବାବା—ବାବା—                    ( ବେଗେ ପ୍ରସ୍ଥାନ )

ସର—ଭାଇ, ଭାଇ । ( କିଛିଦୂର ଅନୁଧାବନ କରି ) ଛାଡ଼ି ଯାଅ ନା—ଛାଡ଼ି ଯାଅ ନା, ଭାଇ—ମୁଁ ଯେ ତୁମର ଅନୁଗାମିନୀ ହେବ ବୋଲି, ସମସ୍ତ ଛାଡ଼ି ଆସିଛି—ବିଶ୍ୱାସ କର, ଭାଇ—ବୌ ଦେଈମାନ ବାଧା ଦେବାକୁ ଧାଇଁ ଆସିବ—ସମସ୍ତ ସଂସାର ଧାଇଁ ଆସିବ—କିନ୍ତୁ ତୁମର ଆକର୍ଷଣ ନିକଟରେ ଯେ ତାହା କାଞ୍ଚିତ୍‌କର ମାତ୍ର—ଛଣ୍ଡାଇ ଦିଅ ନା—ଛଣ୍ଡାଇ

ଦଅ ନା ସେ ରକ୍ତ, ଭାଇ—ଥରେ ମାନଙ୍କର ଯାଇଥିଲି ବୋଲି କଣ ଏହି ପରିଣାମ ତା'ର ? ନା' ତ—ବୌର ବ୍ୟବହାର ? ନା' ତ—ତେବେ, ତେବେ—ଓ ହୋ ! ବୁଝିଲି, ବୁଝିଲି—ମାଉସୀ ଯେଉଁ ସଙ୍ଗୀତର କଥା କହୁଥିଲେ, ସେହି ମହାସଙ୍ଗୀତର ସନ୍ଧାନ ପାଇ, ମୋ'ର 'ସାମାନ୍ୟ' ସଙ୍ଗୀତକୁ ଉପେକ୍ଷା କରି ଚାଲିଯାଉଛି, ଭାଇ !—ଭାଇ ! 'ପିଣ୍ଡ', 'ଶକ୍ତି', 'ପ୍ରଳୟ'—ଏ ଗୁଡ଼ାକ କଣ ଖାଲି କଥାର କଥା ? ପ୍ରାଣହୀନ ତୁଚ୍ଛ ବସ୍ତୁ ?—ତେବେ ସେହି ତୁଚ୍ଛ ବସ୍ତୁ ଯେଉଁ ଗଠିତ ପ୍ରାଣର ଆଉ କି ପ୍ରୟୋଜନ ?—ବିଶ୍ୱର ଅଣୁ ପରମାଣୁ ସଙ୍ଗେ ମିଶାଇଦେଲେ ବରଂ କାହାର କାର୍ଯ୍ୟରେ ଲାଗିପାରେ—

( ଗମ୍ଭୀରଭାବେ ପ୍ରସ୍ଥାନୋଦ୍ୟତା )

( ଜଣେ ବିଦେଶୀ ଗୋପନଭାବେ, ଭୟେ ଭୟେ ପ୍ରବେଶକରିବା )

ବିଦେଶୀ—(ଅନୁଚ୍ଚସ୍ୱରେ) ହେ ଟୋକି—ହେ ଟୋକି—

ସର—କିଏ ଡାକିଲା ? କିଏ ବାଧା—? ( ଫେରି ଚାହିଁବା )

ବିଦେଶୀ—( ଅନୁଚ୍ଚସ୍ୱରେ ) ବିଶ୍ୱ ମହାରଣା ଘର କେଉଁଠି ? ଅଲ୍ଲେ ଜଲ୍‌ଦି ବତାଇ ଦେ—ସେମ୍‌ତିକା ଗୋଟାଏ ଲୁଗ୍-ଖବର—ନା, ନା, କିଛି ନୁହେଁ, କିଛି ନୁହେଁ—ତା' ପୁଅ ନାଁ ଧରମା—

ସର—ହଁ, ହଁ—କି ଖବର ?—କୁହ ମୋତେ—ଭଲଖବର ତ ?

ବିଦେଶୀ—ତୁ ତା'ର କଣ ହଉ କି ?—ନା' ତ—ସେ କହିଛି, ପୁଅଟିଏ ଆଉ ଭାରିଯା ଛଡ଼ା ଘରେ ତାର କେହି ନାହାନ୍ତି ।

ସର—ନା, ନା, ମୁଁ ବି ଜଣେ—ମୋ କଥା କ'ଣ—ନା, ନା—ମୁଁ କେହି ନୁହେଁ, ମୁଁ କେହି ନୁହେଁ—ତେବେ ବି—କୁହ,

କୁହ, କିଏ ଖବର ଦେଇଚି ? କିଏ କହି ପଠାଇଚି ? ଧର୍ମ୍ମା ଭାଇର ବାପ ? କିପରି ଅଛନ୍ତି ? ସବୁ ମଙ୍ଗଳ ତ ? ଅଚ୍ଛା ତୁମେ ଠିଆ ହୁଅ, ମୁଁ ଏହିକ୍ଷଣି ଯାଇ ଡାକି ଆଣୁଚି—ନା, ନା, ଡେରି ହେବ—ତୁମେ ମୋ ସଙ୍ଗେ ସଙ୍ଗେ ଆସ—(ଗମନୋଦ୍ୟତା ହୋଇ ସଙ୍କୋଚରେ) ନା, ନା, ମୁଁ ତ ଯାଇ—

ବିଦେଶୀ—ଯିବାର କିଛି ଦରକାର ନାହିଁ, ଝିଅ—ଖାଲି ଘରଟା କେଉଁଠି ବତାଇ ଦେଲେ ହେଲା !

ସର—ଏହି ଆଡ଼େ ଯାଇ—ଏମିତି ବଙ୍କେଇ (ଦେଖାଇବା) ପଥୁରିଆ ସାହିର ଠିକ୍ ଯଉଁ ମୁଣ୍ଡଘରଟା—

ବିଦେଶୀ—ଦେଖ୍—ମୋତେ ଦେଖିଲୁ, କି ମୁଁ ପଚାରୁଥିଲି ବୋଲି ଯେମିତି କାହାରି ଆଗେ କିଛି ନ କହୁ ।

(ବିଦେଶୀର ପ୍ରସ୍ଥାନ)

ସର—ଏମିତି କାହିଁକି କହୁଚି ଏ ବିଦେଶୀ ?—କି ଲୁଚି ଖବର ? —ଭଲ ଖବର ତ ? ଜାଣିବାକୁ ଯେ ମନ ଭାରି ଉଚ୍ଛନ୍ନ ହେଉଚି—କିଣ ଆପଦ ବିପଦ କିଛି—ଜଗନ୍ନାଥ ନ କରନ୍ତୁ ! —ଯାଏଁ, ଯାଏଁ, ଶୁଣି ଆସେ—ଏହି ଯେ, ଏହି ଯେ ଭାଇ ଏଣେ ଆସୁଚି—ସେ ବିଦେଶୀ ଗଲା କେଉଁ ଆଡ଼େ ?—ପଥ ହୁଡ଼ିଗଲା ନା କିଣ ?—ଯାଏଁ, ଖୋଜି ତାକୁ ବେଗେ ଏଠାକୁ ଘେନି ଆସେ—   (ବେଗେ ପ୍ରସ୍ଥାନ)

(ବାଳକର ବିଷଣ୍ଣଭାବେ ପ୍ରବେଶ)

ଧର୍ମ୍ମା—"ମା'ର କଥାର ଅବାଧ୍ୟ !" ବୌ ! ବୌ ! ଏ କଥା ଆଜି ତୋ' ମୁହଁରୁ ମୋତେ ଶୁଣିବାକୁ ହେଲା ! ବିଶ୍ୱ ପ୍ରଳୟ ହୋଇଯିବ ବରଂ, ଏ କଳଙ୍କ କଦାପି ମୁଁ ସହି ପାରିବି ନାହିଁ;

—କିନ୍ତୁ ବାପାଙ୍କୁ ଦେଖିବାକୁ ଯେ—ନା, ନା, ଏ' ଆବେଗ ମୋତେ ଦମନ କରିବାକୁଇ ହେବ—ମାତୃଆଦେଶ ନ ହେବା ପର୍ଯ୍ୟନ୍ତ, ଧୈର୍ଯ୍ୟ ଧରି ଯେ କୌଣସିମତେ ମୋତେ ରହିବାକୁ ହେବ ।—ସରଳୁ—ହାୟ ! ସେତେବେଳେ କି ଆବେଗରେ ଭାସି ଯାଇ ତା' ମନରେ କି କଷ୍ଟ ନ ଦେଇ ଥିଲି ।—କାହିଁ ସେ ? ଥରେ ଦେଖା—ନା, ନା, ତା' ସଙ୍ଗେ ତ ଆଉ ଦେଖା କରିପାରିବି ନାହିଁ—ମୋ'ରି ପାଇଁ ସିନା ବାପୁରିକୁ କୌଠୁ ତା'ର ଗାଳି ମନ୍ଦ ଖାଇବାକୁ ପଡ଼ୁଛି—ସାଇ ପଡ଼ୋଶୀମାନଙ୍କଠାରୁ ପାଞ୍ଚ କଥା ଶୁଣିବାକୁ ହେଉଛି—( ଫେରି, କୁଞ୍ଜମଧ୍ୟକୁ ଚାହିଁ ) କିନ୍ତୁ, କିନ୍ତୁ, ଆଜି କି ଏ ଥାନକୁ—ନା, ନା, ମୋତେ ଦମ୍ଭ ଧରିବାକୁ ହେବ ।—ପରର ମଙ୍ଗଳ ପାଇଁ ସବୁ ସୁଖ ଜଳାଞ୍ଜଳି ଦେବା ମହା କର୍ତ୍ତବ୍ୟ ।—

( ବିଦେଶୀର ପ୍ରବେଶ )

ବିଦେଶୀ—ହେ ଟୋକା ! ଶୁଣ୍ ଶୁଣ୍—ଏହି ଟୋକା ନା ? ( ଫେରି ଚାହିଁ ) କାହିଁ ଗଲା ସେ ଟୋକା—

ଧର୍ମ୍ମା—( ଫେରି ଚାହିଁବା )

ବିଦେଶୀ—ଅନ୍ତର୍ଦ୍ଧାନ ହୋଇଗଲା ନା, କଣ ? ମୋର ନିଶ୍ଚେ ମତିଭ୍ରମ ହୋଇ ଗଲାଣି—ତା' ନ ହେଲେ କି ପଥୁରିଆ ସାହି ବୋଲି, ମେଥର ସାହିରେ ଯାଇ ହାଜର ହୋଇଥାନ୍ତି ? ଭାଗ୍ୟେ ଟୋକାଟା—ଯାଉ । ( ନିକଟକୁ ଯାଇ ) ତୋ ନାଁ' କ'ଣରେ ଟୋକା ?

ଧର୍ମ୍ମା—ମୋ ନାଁ' ଧରମା—

ବିଦେଶୀ—ବିଶୁ ମହାରଣା—

ଧର୍ମ୍ମା—ମୋର ବାପର ନାଁ, ମୁଁ ତାଙ୍କର ପୁଅ—ତାଙ୍କୁ କଣ—

ବଦେଶୀ—ଠିକ୍ ନକଲ ଏକାବେଳକେ ତ। ତୋର ବୌ ଭଲ ଅଛିରେ ?

ଧର୍ମ୍ମା—ହଁ, ଭଲଅଛି—କୁହ, ତୁମେ କିଏ ? କେଉଁଠା ଲୋକ ? ବାପାଙ୍କୁ କଣ ହେଲା ?—ବାପାଙ୍କ କଥା—

ବଦେଶୀ—ଚୁପ୍, ଚୁପ୍—ମୁଁ ସବୁ କଥା କହୁଚି—( ଏଣେତେଣେ ଚାହିଁ ) (ବିକଳରେ) ଆରେ ବାପ, ଚନ୍ଦ୍ରଭାଗାରେ—

ଧର୍ମ୍ମା—( ଡେଇଁଉଠି ) 'ଚନ୍ଦ୍ରଭାଗା' । 'ଚନ୍ଦ୍ରଭାଗା' ।—ତୁମେ କ'ଣ ଚନ୍ଦ୍ରଭାଗାରୁ ଆସୁଚ ? ବାପାଙ୍କ ଖବର ?—ଯୁଦ୍ଧ କ'ଣ ସରିଗଲାଣି ? ବାପା ତେବେ—

ବଦେଶୀ—ଚୁପ୍, ଚୁପ୍—ଯୁଦ୍ଧ ? – କେଉଁଠି ?—କେବେ ?

ଧର୍ମ୍ମା—କାହିଁକି ? ଚନ୍ଦ୍ରଭାଗାରେ ?

ବଦେଶୀ—ଓହୋ ।—ହଁ ରେ ବାପ, ଯୁଦ୍ଧ ନୁହେ କ'ଣ ?—ପାଣି ସଙ୍ଗେ ଯୁଦ୍ଧ—ପଥର ସଙ୍ଗେ ଯୁଦ୍ଧ – ଏ' କି କମ୍ ଯୁଦ୍ଧ ? ଏ' କି ସରିବାର ?

ଧର୍ମ୍ମା—ସରିବାର ନୁହେଁ ।—ଏମିତିକା ଯୁଦ୍ଧ ସେ ? ଅଚ୍ଛା, ମଉସା । କି ସଙ୍ଗୀତ ସେଠାରେ ଶୁଣି ଭଲ, ତୁମେମାନେ ଘର ଦ୍ୱାର, ପୁଅ ମାଇପ ଏକାବେଳକେ ପାଶୋରି ଯାଇଚ ?

ବଦେଶୀ—( ଶ୍ଳେଷଭାବେ ) କହନା, କହନା, ବାପ ସେ ସଙ୍ଗୀତ କଥା—ଯଉଁ ତାନ, ମାନ, ଗର୍ଜନ । ଶୁଣିଲାରେ ଯେମିତି—ପାଣିଭିତରେ ବି ସେମିତି—ଆମେମାନେ ନିଜକୁ ପରି ପାଶୋରି ଯାଇଥିଲୁ ।—ସେଠାକୁ ନ ଗଲେ କି ସେ କଥା ବୁଝି ପାରିବୁ ?—ଛାଡ଼, ମୁଁ ବେଶୀ ବେଳ ଆଉ ରହିପାରିବି ନାହିଁ, ବାପା—            ( ଇତସ୍ତତଃ ସଭୟେ ଚାହିଁବା )

ଧର୍ମ୍ମା—ଓହୋ । ତୁମେ ସେ ଅନନ୍ଦପୁରୀକୁ ଫେରଯିବାକୁ ଇଚ୍ଛୁକ ହେଉଚ ପରା ? ମୋତେ କ ସାଙ୍ଗରେ—? ନା, ନା,—

ସ୍ୱଦେଶୀ—ଅରେ, ଅରେ, ବାପ । ସେ ଯମପୁରୀକୁ ଯିବାର ନାଁ ଧର ନା—ନାଁ ଧର ନା—

ଧର୍ମ୍ମା—ଏ କ'ଣ କହୁଚ, ମଉସା ? ତୁମେ ବୀର, ଯୋଦ୍ଧା ହୋଇ—

ସ୍ୱଦେଶୀ—ବଞ୍ଚିଲେ ତ ?

ଧର୍ମ୍ମା—ତୁମେ କଣ ତା' ହେଲେ ପଳାଇ ଅସିଛ ?

ସ୍ୱଦେଶୀ—ଏକା ନିଃଶ୍ୱାସରେ ବାପ, ଏକା ନିଃଶ୍ୱାସରେ—ପ୍ରାଣଟାକୁ—(ଧଇଁସଇଁ)

ଧର୍ମ୍ମା—ପ୍ରାଣଟାକୁ ସ୍ଥିର ବଞ୍ଚାଇବା ଲୋଭରେ କ'ଣ ଯୁଦ୍ଧକ୍ଷେତ୍ରରୁ ପଳାୟନ ?

ସ୍ୱଦେଶୀ—ମାତ୍ର ଦ ୧୫ ନ ବାଙ୍କରେ, ବାପ—

ଧର୍ମ୍ମା—କଣ ପନ୍ଦରଦନ ବାକୀ ?

ସ୍ୱଦେଶୀ—ସେ କଥା କହିଲ ବେଲକୁ କୋହ ଖାଲ ଉଠରୁ ଇଚ୍ଛୁକ ଜନ୍ମରେ, ବାପ—ବାର ବର୍ଷ ଭାଲ ଦନ ନାହିଁ ରାତ ନାହିଁ, ଭାମ କର କର, କୌଣସିମତେ ଯଦ ଦେଉଳଟି ଗଢ଼ିଲି—ମୁଣ୍ଡି ଅଜ ମରେ ନାହିଁ ।

ଧର୍ମ୍ମା—ମୁଣ୍ଡି ମରେ ନାହିଁ ? ତେବେ କଣ ତାହାର ମୁଣ୍ଡ ନାହିଁ ?

ସ୍ୱଦେଶୀ—ରାଜାଦେଶରେ ଶୀଘ୍ର ତାହାହିଁ ହେବରେ, ବାପ ।

ଧର୍ମ୍ମା—ହେବା ଖୁବ୍ ଉଚିତ ।

ସ୍ୱଦେଶୀ—ଏଁ, ଏଁ—କଣ କହିଲୁ ରେ ? କଟେ ନୁହେଁ, ଦୁଇଜଣ ନୁହେଁ—ଏ' ଯେ ଶହ, ଶହ—ବାର ଶହ ବଢ଼େଇର ।

ଧର୍ମ୍ମା--ବାର ଶହ ଘୁଡ଼ ବାରହଜାର ବଢ଼େଇର ମୁଣ୍ଡକାଟ ହେଲେ ବି କୌଣସି କଷ୍ଟ ନାହିଁ—ଗୋଟାଏ ଜାତି ଯଦି ଉଚ୍ଛନ୍ନଯାଏ ସେଥିରେ ବି ଟିକଏ ହେଲେ ଦୁଃଖ ନାହିଁ । ଓଃ, ଦେଉଳଟା ଗଢ଼ି ମୁଣ୍ଡି ମାରିବାକୁ ମୃତ୍ୟୁ ନାହିଁ— ଯୋଦ୍ଧା ହୋଇ ଯୁଦ୍ଧରେ ଜିଣିବାର ଶକ୍ତି ନାହିଁ ?

ବିଦେଶୀ—ଅରେ, ଏ ତ ଗୋଟାଏ ଅସୁରିଆ ପିଲ—ଯା' ବାପ କାନ୍ଧ କରି ଖବର କ'ଣ—

ଧର୍ମ୍ମା—'ବାପା' ।—'ବାପା' ।—ସତେ ସତେ ବାପାତ ସେଠି କାମ କରୁଛନ୍ତି—ବାପା କ'ଣ—

ବିଦେଶୀ—ତୋ'ର ବାପା ଯେ ସର୍ଦ୍ଦାର—

ଧର୍ମ୍ମା—ବାପା ସର୍ଦ୍ଦାର—ଅଥଚ ମୁଣ୍ଡିମରି ହୋଇପାରୁ ନାହିଁ ?— ବୌ ! ବୌ ! ଆଜ ମୁଁ ତୋ' କଥା ମାନିପାରିବି ନାହିଁ— ଏହିକ୍ଷଣି ବାହାରିଲି—ଏ' ଯୁଦ୍ଧ, ମହାଯୁଦ୍ଧ—ବାପା ଭାରି ବିପଦରେ—୧୨୦୦ ଜଣ—ନା, ନା ଗୋଟାଏ ଜାତି ଭାରି ବିପଦରେ—ମୁଁ ବାହାରିଲି—ମୋ'ର ସମସ୍ତ ଶକ୍ତି ଦାନ କରି ବାପାକୁ ମୋର—ଜାତିକୁ ମୋର ଉଦ୍ଧାର କରି ଫେରି ଆସିବି ।

ବିଦେଶୀ—ଆରେ ପିଲ ! ତୁ' ଏକା କଣ କରିପାରିବୁ ରେ ?

ଧର୍ମ୍ମା—ଅଭିମନ୍ୟୁ ତ ପିଲ ଥିଲେ—ସପ୍ତରଥି ସଙ୍ଗେ ଏକା ଯୁଦ୍ଧ କରି ଜଗତକୁ ସେ ସ୍ତମ୍ଭିତ କରିଥିଲେ—ମୁଁ ଏକା ନ ପାରିବି କାହିଁକି ? ନିଶ୍ଚୟ ପାରିବି । ଏହି ଶୁଣ—ଏହି ଶୁଣ —ସେହି ମହା ସଙ୍ଗୀତର ମହା ଉତ୍ସବ ଧ୍ୱନି—ଭେରୀର ଭୈରବ ନିନାଦ—ଦୃପ୍ତ ସାଗରଙ୍କର ସମରୋଚ୍ଛ୍ୱାସ—ଗୁରୁ ଗମ୍ଭୀର ନିନାଦରେ କିଏ ଯେମନ୍ତ ଆହ୍ୱାନ କରି କହୁଚି,'ଧର୍ମ୍ମ',

ଧର୍ମ, ଅଗ୍ରସର ହ' – ଅଗ୍ରସର ହ' – ମହାବିପଦରେ ପିତା ତୋ'ର, ଜାତି ତୋ'ର—ପିତୃକାର୍ଯ୍ୟ ଉଦ୍ଧାର କର, ଜାତିର କାର୍ଯ୍ୟ ସାଧନ କର" – ଏହି ଶୁଣ, ଏହି ଶୁଣ – ୧୨୦୦ ଜଣର – ସମସ୍ତ ଶିଳ୍ପିର ସମକଣ୍ଠୋଚାରିତ କାତରକ୍ରନ୍ଦନ— ନା, ନା ଏ ଯେ ଗୋଟାଏ ଜାତିର ଅହ୍ୱାନ—ଗୋଟାଏ ଦେଶର ଆଦେଶ—ଗୋଟାଏ ବିଶ୍ୱଜଗତର ପ୍ରେରଣା । ମୋ'ର ବ୍ରତ—ମୋ'ର କାର୍ଯ୍ୟ—ମୋ'ର ଧର୍ମ । ( ନେପଥ୍ୟେ ଉତ୍ସାହସୂଚକ ବାଦ୍ୟ ଓ ସଙ୍ଗେ ସଙ୍ଗେ ସବର ଉତ୍ସାହଗୀତ ଶୁଣୁ ଶୁଣୁ ଉତ୍ତେଜିତ ହେବା )

(ନେପଥ୍ୟେ ସବ) – —ଗୀତ—

ହୁଅ ଧନ୍ୟ । ହୁଅ ଗଣ୍ୟ ।—ହୁଅ ବୀର ବରେଣ୍ୟ ।
ତୁମ୍ଭ କୀର୍ତ୍ତି—ତୁମ୍ଭ ପ୍ରୀତି—କରୁ ବିଶ୍ୱବରେଣ୍ୟ ।

ବଢେଣୀ—( ଚୂଲିଯାଇଥିଲି )

[ କମାଣ ମୁଦ୍ଗର ଅବଶ୍ୟକ ହତିଆର ହସ୍ତେ ସବର ପ୍ରବେଶ ]

ସବ – ଅଳ୍ପ ସମୟ ନାହିଁ, ବୀର—ଅଗ୍ରସର ହୁଅ । ଏହି ଧର ତୁମ୍ଭର ଯଥାଯୋଗ୍ୟ ଅସ୍ତ୍ରଶସ୍ତ୍ର – ( ଅସ୍ତ୍ରପ୍ରଦାନ )

ଗୀତ

ଗିରି ଶୃଙ୍ଗ କାଟି, କର ସମତଳ—
ସାଗର ଶୁଖାଇ, ଦେଖ ରସାତଳ—
ଧରା ଛେଦ—ଅଭ୍ର ଭେଦ – ତୋଳ ସ୍ତମ୍ଭ ବରେଣ୍ୟ !

ଧର୍ମ୍ମା—(ସାଷ୍ଟାଙ୍ଗେ ଗୃହିଁ ରହିଥିବା )

ସବ—ଉଠ, ମାତ, ଅଗ୍ରସର ହୁଅ, ବୀର – ଯୁଦ୍ଧ – ଯୁଦ୍ଧ –

ଧର୍ମ୍ମା—ଏ' କି ଭୈରବୀମୂର୍ତ୍ତି !

ସର—ମୁଁ ଯେ ତୁମର ସର, ଭାଇ—ଅଜ ଭାଲ ବାଳମ୍ବ କର ନାହିଁ—ଶତ, ଶତ ପ୍ରାଣୀ ଯେ ତୁମର ଅଗମନ ଅଶାରେ କଣ୍ଠାଗତ ପ୍ରାଣ ।

ଧର୍ମ୍ମା—ସର—ସର—ଶକ୍ତିମୟୀ ମୋର ।—ଶୁଣିଚ କି ତେବେ—

ସର—ସବୁ ଶୁଣିଚ ଭାଇ ।—ଜଗନ୍ନାଥ ଭରସା—ଅମ୍ଭମାନଙ୍କର କେବଳ, କାର୍ଯ୍ୟ—କାର୍ଯ୍ୟ—

ଧର୍ମ୍ମା—ଠିକ୍ କହୁଚ, ଭଉଣି । କାର୍ଯ୍ୟ—କାର୍ଯ୍ୟ—କିନ୍ତୁ ଏ' କାର୍ଯ୍ୟର ସହାୟ ତୁମେ ସିନା ?—ଓ ହୋ । ମୋ'ର ପାଇଁ ତୁମକୁ କେତେ କଷ୍ଟ—ନା, ନା, ଭଉଣି ଅଜ ତୁମେ ମୋ ସଙ୍ଗେ—କିନ୍ତୁ, କିନ୍ତୁ, ମୁଁ ଯେ ତୁମକୁ ଛାଡ଼ି ରହିପାରିବ ନାହିଁ, ଭଉଣି । ସର—ସର—କୁହ, ମୋତେ କ୍ଷମା କରିବ ? ମୁଁ ଯେ ତୁମର ଏହି ପ୍ରାଣସ୍ପର୍ଶୀ ସଙ୍ଗୀତକୁ ତୁଚ୍ଛ ଜ୍ଞାନ କରିଛି—ଶକ୍ତିମୟୀ ତୁମ୍ଭଙ୍କୁ ଉପେକ୍ଷା—

ସର—ଭାଇ । ଭାଇ । ମୋତେ ବରଂ କ୍ଷମା କର—ଜାଣି ନ ଥିଲି ଯେ,ଏ' ଦେହ ସାମାନ୍ୟ ଧୂଳିମାଟି ନୁହେଁ—ସେହି ମହାଶକ୍ତିର ଗୋଟାଏ ସମୁଜ୍ଜ୍ୱଳ ରଶ୍ମି !—ଏହି ସଙ୍ଗୀତ ମୋ'ର ସ୍ୱତନ୍ତ୍ର କିଛି ନୁହେଁ—ତୁମର ସେହି 'ମହାସଙ୍ଗୀତ'ର ଗୋଟାଏ ସୁଧାମୟ ସଞ୍ଜୀବନୀ ପ୍ରତିଧ୍ୱନି ମାତ୍ର ।

ଧର୍ମ୍ମା—ଅଜ କି ଭୟ ମୋର—ଏହି ସୁଧାମୟ ସଞ୍ଜୀବନୀ ପ୍ରତି-ଧ୍ୱନିରେ ଯେତେବେଳେ ମୋ'ର ନିତ୍ୟ ଅବଗାହନ—ନିଜେ ଦାନବଦଳନୀ ଅଭୟାମୂର୍ତ୍ତି ଯେତେବେଳେ ମୋ'ର ଚିର ସହଚରୀ ? ଅସ, ଅସ, ପ୍ରାଣମୟି, ଶକ୍ତିମୟି । ଅଜ ବିଳମ୍ବ ନିଷ୍ପ୍ରୟୋଜନ—

ସର—କ୍ଷମାକର, ଭାଇ—ଅଜ ତ ମୁଁ ତୁମ ସଙ୍ଗେ ଯାଇ ପାରିବ ନାହିଁ—

ଧର୍ମ୍ମା—( ଚମକି ଉଠି ) ସର ।—

ସର—ସଙ୍ଗୀକୁ ସଙ୍ଗୀର କାର୍ଯ୍ୟ କରିବାକୁ ଦିଅ, ସଖା ।—ଆଜି ତୁମେ ଯାଉଛ ଯୁଦ୍ଧ କରିବା ପାଇଁ—ଜାତିର ପ୍ରାଣରକ୍ଷା କରିବା ପାଇଁ—ଦେଶର ମାନ ବଢ଼ାଇବା ପାଇଁ—ଜଗତର କଲ୍ୟାଣ ସାଧନ କରିବା ପାଇଁ; ମାତ୍ର ଏଠାକାର ତୁମ୍ଭର ଯୁଦ୍ଧ ଚଳାଇବ କିଏ ? ତୁମର ଜଗତର କଲ୍ୟାଣ ସାଧନ କରିବ କିଏ ? ତୁମର ଗୃହର ମାନ ବଢ଼ାଇବ କିଏ ? ତୁମର ବୌ'ର ପ୍ରାଣରକ୍ଷା କରିବ କିଏ ?

ଧର୍ମ୍ମା—ସର । ସର । —

ସର—କର୍ତ୍ତବ୍ୟ ! କର୍ତ୍ତବ୍ୟ !—ଭାଇ । ଭାଇ । ଏହି କର୍ତ୍ତବ୍ୟ ଆଦେଶରେ ତୁମେ ଯେତିକି ଦୂରେ ଚାଲିଯାଉଚ—ଯେତିକି ଆଖିର ଅନ୍ତରାଳ ହୋଇଯାଉଚ, ମୁଁ ଯେମନ୍ତ ସେତିକି ଆଖି ଆଗରେ, ସେତିକି ନିକଟରେ ତୁମକୁ ଦେଖି ପାରୁଛି । ଆଜି ତୁମେ ଜାତିର—ଦେଶର—ଅପରର ହୋଇ, ମୋ'ର ଯେମନ୍ତ ଅଧିକ ନିଜର—ହୃଦୟର—ପ୍ରାଣର ହୋଇ ଉଠୁଚ । ଭାଇ । ଭାଇ । ସତେ, ସତେ ଆଜି ମୋ' ଭିତରେ କି ଗୋଟାଏ ନୂତନ ଭାବସମୁଦ୍ର ମାଡ଼ି ଆସୁଛି, ତା' ମୁଁ ଜାଣୁଛି, ଆଜ ମୋ'ର ମନ ଜାଣୁଛି ।

ଗୀତ

କି ବୀଣା ବାଜେ କି ସ୍ୱର ଲହରେ
ମୁହିଁ ଜାଣେ ମୋ'ର ମନ ଜାଣେ ।
କି ଯେ ସେ ଗୀତ କେଉଁ ଧ୍ୱନି ମାତ
ମୁହିଁ ଜାଣେ ମୋ'ର ମନ ଜାଣେ ।

ଯେତକ ଭାବେ ନୁହଁ ତୁମ୍ଭେ ମୋ'ର,
ତେତକ ଜାଗେ ଅଛ ତୋ ମୋ'ହର—
ଏ' ଯେ କି ଭାବନା                    କି ମହା ଚେତନା
ମୁହିଁ ଜାଣେ ମୋ'ର ମନ ଜାଣେ ॥

ଧର୍ମ୍ମା—ଭଉଣି । ଭଉଣି । ( ଅଲିଙ୍ଗନ କରିବା )

( ବାଳକ-ମାତାର ଅର୍ଘ୍ୟାଦି ଘେନି ପ୍ରବେଶ )

ଧର୍ମ୍ମା ମା—ଅହା । ଏ' ଯେ ଯୁଗଳମୂର୍ତ୍ତି —
ଧର୍ମ୍ମା—ବୌ । ବୌ ।
ଧର୍ମ୍ମା ମା—ଧନରେ ମୋ'ର । ( ଉଭୟଙ୍କୁ ଅଲିଙ୍ଗନ କରିବା )
ସର—ବିଳମ୍ବ କରନା, ମାଉସି ।

ଧର୍ମ୍ମା ମା—ଆ'ରେ ଧନ । ଏ' ଶୁଭ ଅନୁକୂଳରେ ଅଉ ଫେରାଇବ ନାହିଁ—ଏଇଠି ସେହିପରି ସଜାଇ ଦିଏ—ମଥୁରା ବିଜେବେଳେ ଗୋପାଳଙ୍କୁ ଯଶୋଦାରାଣୀ ଯେଉଁପରି ସଜାଇ ଦେଇଥିଲେ—

[ ବାଳକକୁ ସଜାଇବାକୁ ଲାଗିଲେ ]

ସର—                                    ଗୀତ

ସଜାଅ, ସଜାଅ, ସେ ସାଜେ ସଜାଅ,
ଯେ ସାଜେ ସାଜି ମୋହନ,
ମଥୁରା ବିଜୟେ ଚାଲିଥିଲେ ରଥ—
ଘର୍ଘର ହୁଁକାରେ କମ୍ପାଇଣ ପଥ,
କମ୍ପିତ ଶଙ୍ଖ—କମ୍ପିତ ଧରା—ଶୁଣି ସେ ବିଜୟ ଘୋଷ ॥

ଦେବାଙ୍ଗନାଗଣ—ଗାଅ ହେ ବିଜୟ ମଙ୍ଗଳ ସଙ୍ଗୀତ
ଧରହେ ଉଚ୍ଚେ ତାନ୍ ।
ଶଙ୍ଖ, ହୁଳହୁଳି, ଘନ କରତାଳି
ବଢ଼ାଉ ବୀର ମାନ୍ ।
ସର— ବଜାଅ, ବଜାଅ, ସେ ବାଜା ବଜାଅ,
ଯେ ବାଜା ଶୁଣି, ଅହବେ
ସୁଭଦ୍ରା ସନ୍ତାନ ଧାଇଁ ଥିଲ ହେଲେ,
ଅସ୍ୱତ ଦୁର୍ଜୟ, ସପ୍ତରଥି ମେଳେ –
ସେ କି ଧର୍ଷଣ—ସେ କି ମର୍ଷଣ—ଥରହର ବିଶ୍ୱସାରା ।
ଦେବାଙ୍ଗନାଗଣ—ଗାଅ ହେ ବିଜୟ ମଙ୍ଗଳ ସଙ୍ଗୀତ
ଧର ହେ ଉଚ୍ଚେ ତାନ୍ ।
ଶଙ୍ଖ, ହୁଳହୁଳି, ଘନ କରତାଳି
ବଢାଉ ବୀର ମାନ୍ ।
ସର— ଜଗାଅ, ଜଗାଅ, ସେ ଜାଗେ ଜଗାଅ,
ଯେ ଜାଗେ ଜାଗି ଯୋଗେଶ—
ସବଂଶେ ସଗର କରିଥିଲେ ନାଶ
ଅଗ୍ନେୟ ଉଦ୍‌ଗାରେ ଜଳୁଲାଇ ରୋଷ
ସେ କି ସ୍ପନ୍ଦନ—ସେ କି ଗର୍ଜନ—ଜାଗରିତ ନାରାୟଣ ।
ଦେବାଙ୍ଗନାଗଣ—ଗାଅ ହେ ବିଜୟ ମଙ୍ଗଳ ସଙ୍ଗୀତ
ଧର ହେ ଉଚ୍ଚେ ତାନ୍
ଶଙ୍ଖ, ହୁଳହୁଳି, ଘନ କରତାଳି
ବଢ଼ାଉ ବୀର ମାନ୍ ।
ଧର୍ମ୍ମ ମା—ଆଶୀର୍ବାଦ କରେ ରେ ସଙ୍ଖାଳି । ଦେବକୀନନ୍ଦନ କଂସରାକ୍ଷସକୁ ବିନାଶ କରି. ପିତାଙ୍କ ତାଙ୍କର ଯେପରି ଉଦ୍ଧାର କରିଥିଲେ, ଅଜ୍ଞାନ ରାକ୍ଷସକୁ ବିନାଶକରି ତୋ'ର ପିତାକୁ

ନା—ଗୋଟାଏ ଜାତକୁ—ତୋର ଦେଶକୁ ସ୍ୱୈହ୍ରପର ଉଦ୍ଧାର କର । ( ସର ପ୍ରତି ) ଅ’ ମା—ଶ୍ରୀମତୀ ଅଢ଼ ଯଶୋଦା ରାଣୀ ସିନା ଶୋକାଶ୍ରୁ ବୁହାଇ—କନ୍ଦନରୋଳ ଉଠାଇ, ବ୍ରଜମୋହନଙ୍କୁ ବିଦାୟ ଦେଇଥିଲେ—ଅମ୍ଭେମାନେ ଆନନ୍ଦରୋଳ ଉଠାଇ—ଆନନ୍ଦାଶ୍ରୁ ବୁହାଇ, ପ୍ରାଣମୋହନଙ୍କୁ ଅମର ବିଦାୟ ଦେବା—

ଧର୍ମ୍ମା—ବୌ ! ବୌ ! କ୍ଷମାକର—ମୂଢ଼ ମୁହିଁ ମାତୃଆଜ୍ଞା ନ ନେଇ—

( ଜାନୁପାତ ପୂର୍ବକ )

ଧର୍ମ୍ମା ମା—( ସସ୍ମିତେ )—ସେ ଅଭାବ, ଏହି ମା ମୋ’ର ପୂରାଇଲା ରେ ବାପ । ( ସବକୁ ଚୁମ୍ବନ କରି )—ଦେଖ୍, ବାପ ମୋର—ଯେ କୌଣସି କାମ କରିବା ଆଗରୁ, ଉନ୍ନତ ହେଉ ପଛକେ, ଭାବି ଚିନ୍ତି କରିବା ଉଚିତ—ଖାଲି ଗୋଟାଏ ଆବେଗରେ ଭାସିଯିବା ଠିକ୍ କି ?

ଧର୍ମ୍ମା—ସେଥିରେ ଯେଉଁ ଦମ୍ଭ ଆବଶ୍ୟକ, ତାହା. ଏହି ଦେବୀ-ପ୍ରତିମା—

ସର—ବିଳମ୍ବ ହେଉଛି, ଭାଇ –

ଧର୍ମ୍ମା—ସର ! ସର ! ଏ’ ଅମୂଲ୍ୟ ଶିକ୍ଷାର ମର୍ଯ୍ୟାଦା କାର୍ଯ୍ୟରେ ଦେଖାଇ ତୁମର ମର୍ଯ୍ୟାଦା ବଢ଼ାଇବି, ସର !—ବୌ ! ବୌ ! ସନ୍ତାନକୁ ବିଦାୟ ଦେ—( ଅବନତ ହେବା )

ଧର୍ମ୍ମା ମା—ଆଶୀର୍ବାଦ କରୁଛିରେ, ଧନ—ବିଜୟୀ ହୋଇ ପିତାସଙ୍ଗେ ତୋ’ର ଶୀଘ୍ର ଘରକୁ ଫେରଅ’—

ସର-ମା—(ନେପଥ୍ୟେ) କାହିଁ ଗଲୁ ସେ ଟୋକା ?—ମୋତେ ଟିକିଏ କରଜୋଡ଼ ଲାଗିଛି କି ନାହିଁ –(ପ୍ରବେଶ କରି) ଏହି ଯେ କଦମ୍ବମୂଳରେ ଯୁଗଳେ ଯୁଗଳେ – କି, ଭଉଣୀ – ତୁମେ ବି –

ସର — ବୌ ! ବୌ ! ତୋ'ର ଗୋଡ଼ ଧରୁଛି — ଏ' ଶୁଭବେଳେ —

ସର-ମା—ତୁମେତ ବେଶ ନବରଙ୍ଗ ଲଗେଇଚ, ଧର୍ମ୍ମା ବୌ — ତୁମେ ବେମହତଅଣୀ ବୋଲ୍ ଜଣ, ସମସ୍ତେ —

ଧର୍ମ୍ମା — ଅଜ ତୁମର ଭୟନାହିଁ, ମାଉସି — ଏ' ଗ୍ରାମରୁ ଯେ ମୁଁ ଏଇକ୍ଷଣି ବିଦାୟ ନେଉଚି —

ସର-ମା — କେଉଁ ଗାଡକୁ ଯାଉଚରେ, ଗାଡପଣା ?

ସର — ଯେଉଁ ଗାଡରୁ ଲୋକେ ମୁଣ୍ଡା ଝୁଣ୍ଡା ସ୍ନାନ ଅଣିଥାନ୍ତି, ବୌ ।

ସର-ମା — କି ଲୋ ! ତୋ'ର ତ ଭାରି ମୁହଁ ବଢ଼ି ଗଲାଣି — ଦେବି ଯେ —

ଧର୍ମ୍ମା ମା — ଥାଉ, ଥାଉ, ଭଉଣି — ପିଲାଟା ଯାହା କହୁଚି —

ସର-ମା — ମଲ ମୋ'ର ଯାଉସି ! — କିଲୋ — କେଉଁଠିକି ପଠାଇ ଦେଉଚୁ କି ?

ଧର୍ମ୍ମା ମା — (ଗଦ୍‌ଗଦ କଣ୍ଠେ) ତା' ବାପ ପାଖକୁ —

ସର-ମା — ଚନ୍ଦ୍ରଭାଗାକୁ ? ଅଲୋ, ଅଲୋ, ତୁ କଣ କହୁଚୁ ? — ତୁ କଣ ଶୁଣି —

ଧର୍ମ୍ମା ମା — ଭଉଣି, ଭଉଣି ! ସେ କଥା କହି ଲଜ୍ଜାର ମୋ'ର ଖୋଲ ଦିଅ ନାହିଁ — ଅଶୀର୍ବାଦ କର — ପିଲାମୋର —

ସର-ମା — 'ହାଣମୁହଁକୁ ଯାଉ' ଏଇକଥା କହିବି ନା ? — ତୁ ପୁତୁଖାଇ ବୋଲି କଣ ବୁଝିଥିଲ ସେଇଅ ? — ଅ'ଲୋ ଟୋକି —

( ଗମନୋଦ୍ୟତା ହେଲେ )

ଧର୍ମ୍ମା — ତୁମର ଅଶୀର୍ବାଦ ନ ନେଇ ମୁଁ କେବେ ଛାଡ଼ିବି ନାହିଁ, ମାଉସି ! ( ଚରଣ ଧରିବା )

ସର-ମା—ଅରେ—ଅରେ, କ'ଣ କହୁଚେ, ଟୋକା—ଘଡ଼, ଘଡ଼, ମୁଁ କ ଆଶୀର୍ବାଦ କରବ୍ ରେ—ସେ ହାଣମୁହଁକୁ ଛୋଡେ ବାଟ ନ ମିଳୁ—

ଧର୍ମ୍ମା—ନା, ନା, ମାଉସି ! ସେପର କୁହ ନାହିଁ—ହାଣ ମୁହଁରେ ଯେ ଅଛି ମୋ'ର ପିତା — ମୋ'ର ଜାତ — ମୋର ଦେଶ !

ସର-ମା — ମଲ୍ ମୋର — ତୁ ମାଙ୍କଡ଼ ଛୁଆଟା, ଯାଇ କଣ ଜୟ୍ କରି ଅଣିବୁ ?

ଧର୍ମ୍ମା—ତୁମ ଅଶୀର୍ବାଦରେ, ମାଉସି — ନିଶ୍ଚୟ ଅଣିବ —

ସର-ମା — ଅରେ ଟୋକା — ଏଡ଼େ ସାହସ ନା ତୋର ? —
ଅଲୋ ଧର୍ମ୍ମା ବୌ — ତୋର କଣ' ଟିକିଏ ଅକଲ ନାହିଁ ?
— ଜାଣି ଶୁଣି ଯମ ମୁହଁକୁ ପିଲାଟାକୁ ସିନା — ଅହା ! —
( ସସ୍ନେହ ଦୃଷ୍ଟିରେ ବାଳକକୁ କ୍ଷଣକାଳ ନିରୀକ୍ଷଣ କରିବା )
ଅଲୋ ପୁତୁଖାଇ, ତୁ କରଚୁ କ'ଣ — ପୁଅଟାକୁ ଯମ ସଙ୍ଗେ ଲଢ଼ିବାକୁ ପେଲି ଦେଉଚୁ — ବେକରେ ଗୋଟାଏ ଡେଙ୍ଗୁରିଆ ଫେଙ୍ଗିରିଆ ବି ବାନ୍ଧ ଦେଇ ନାହୁଁ ? — ମ, ଭାଲ ତ କପିଳାମାକୁ ଦେଇ ପଢାଇଲି — ସେଇ ହୁକୁମୀ ଡେଙ୍ଗୁରିଆ ଯୋଡ଼ିକକୁ କେତେ ସାଇତ ସାଇତ ଗୋଟିଏ ଲୁଗୁରି ରଖିଥିଲି — ଏମିତି ବିପଦରେ କେଉଁ କେବେ ପଡ଼ିଲେ — କ'ଣ କରୁଛୁ ? ଜାଣି ଶୁଣି ପୁଅଟାକୁ କେମିତି — ଅଇଲୁ, ଅଇଲୁ ସର ! ତୋର ଡେଙ୍ଗୁରିଆଟା — ( ଫିଟାଇ ନେଇ ଧର୍ମ୍ମା ବେକରେ ପିନ୍ଧାଇ ଦେଇ ଚୁମ୍ବନ କରିବା )

ଧର୍ମ୍ମା—( ପଦଧୂଳି ନେଇ ) ଏହା ତ ମୋ'ର ବିଜୟ କବଚ, ମାଉସି !

ସର—( ନତଜାନୁ ହୋଇ ) ବୌ, ବୌ ! — ମା'କୁ ମୋ'ର ଏତେଦିନେ ଚିହ୍ନିଲି ସିନା !

ଧର୍ମା ମା—ପାଷାଣୀ ମୁଁ – ପାଷାଣ ବୁକୁରେ ସବୁ ଦେଖୁଛ, ସବୁ ଶୁଣୁଛ – ( ଦୃଢ଼ଭାବବ୍ୟଞ୍ଜକ ଦୃଷ୍ଟିରେ ଗୃହିଁବା )

[ ଦାସ ଭୋଇ ପିଠିରେ ଗୋଟାଏ ଗୁଜୁଲା ବାନ୍ଧ ଓ ଠେଙ୍ଗାଟାଏ ଧରି ଘମା, ଶାମା ଅଭ ଧର୍ମାର ସଙ୍ଗୀମାନଙ୍କ କର୍ତ୍ତୃକ ଭର୍ତ୍ସିତ ହୋଇ ପ୍ରବେଶ ]

୧ମ ବାଳକ – ବଦ୍‌ମାସ । ଖଣ୍ଡ । ଧରମାକୁ ଆମର ତୁ କେଉଁ-ଠାକୁ ଘେନ ଯିବୁରେ ? – ଧରମା । ଧରମା । ତୁ କଣ ସତେ ସତେ ଲୁଚିକରି ଆମକୁ ଅଜ ଛାଡ଼ ଚ୍ଳଲ୍ ଯାଉଛୁ ? କେତେ କଥା ତ ତୋତେ ନିତ ନିତ କହୁଥାଉଁ – କାହିଁ ଦନେ ତ ତୁ ଆମ ଉପରେ ରଗିନାହୁଁ ? – ତୋତେ ମେଳରେ ନ ନେଲେ ଯେ ଆମର ଜମେ ନାହିଁ – ଅଜ ତୁ ନ ଥିଲୁ, କେମିତକା ଅଲଗା ଅଲଗା ଲାଗୁଥିଲା ପିନା । –

୨ୟ ବାଳକ – ସର । ସର । ତୁ କଣ ଭାଣ୍ଡ ଦେଉଛୁ ? – ଅମେ ହୁଂସାକଲୁ ବୋଲି ? – ଏ' କଣ ଅମର ମନର କଥା ? ।

୩ୟ ବାଳକ – ସରଅବୋକ । ତୁମେ ଅମର କଥାରେ ଧରମାକୁ ଏମିତକା ଗାଳମନ୍ଦ କଲ ଯେ, ଧରମା ଅଜ ଗାଁ ଛାଡ଼ – ଅମକୁ ଛାଡ଼ – ( ବାଳକମାନେ କାନ୍ଦ ପକାଇବା )

୧ମ ବାଳକ – ଧର୍ମାର ବୌ । ତୁମେ ପର ମା – କେମିତକା ଛାତ ତୁମର ? ମା, ହୋଇ ପୁଅକୁ ଯମ ମୁହଁକୁ –

ଧର୍ମା – ଯମ ମୁହଁକୁ ଯାଉନାହିଁ, ଭାଇମାନେ – ଯମମୁହଁରୁ ଅମର ବାପ, ଦାଦା, ଭାଇ, ବନ୍ଧୁଙ୍କୁ ଉଦ୍ଧାର କରିବାପାଇଁ ଯାଉଛ । ତୁମେମାନେ ହସି ହସି ମୋ'ର ଜୟକାମନା କରି ମୋତେ ବିଦାୟ ଦଅ । ( ଅଲିଙ୍ଗନ କରିବାକୁ ଯିବାବେଳେ )

ବାଳକଗଣ – ଭାଇ ! ଭାଇ ! – ( ଦଉଡ଼ିଯାଇ ଦୃଢ଼ଭାବେ ଆଲିଙ୍ଗନ କରିବା )

ସର – ଛି, ଭାଇମାନେ ! ଏତେବେଳେ କି କାନ୍ଦିବା ଉଚିତ ? କୁହ ସମସ୍ତେ, 'ଧରମା ଭାଇର ଜୟ' !

ବାଳକଗଣ – ଜୟ ଧରମାର ଜୟ !

ଧର୍ମା – ଆସୁଛି, ଭାଇମାନେ !

ବାଳକଗଣ – ଭା–ଇ ! – ଭା-ଇ – ( କାନ୍ଦିପକାଇ ପୁଣି ଆଲିଙ୍ଗନ କରିବାକୁ ଯିବାବେଳେ )

୧ମ ବାଳକ – ନା, ଭାଇ ! ଆସ ଆମ୍ଭେମାନେ ଫୁଲତୋଳି ଭାଇକୁ ଆମର ଜୟମାଳା ଆଗରୁଁ ପିନ୍ଧାଇଦେବା ।

( ବାଳକମାନଙ୍କ ପ୍ରସ୍ଥାନ )

ଧର୍ମା – ଆସୁଛି, ବୌ ! – ସର ! — ବିଦାୟ –

[ ଧର୍ମା ନିଜର ମା' ଓ ମାଉସୀଙ୍କ ଠାରୁ ବିଦାୟ ନେଇ ପରେ ସରଠାରୁ ବିଦାୟ ନେଇ ପ୍ରସ୍ଥାନ ]

---

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ—

[ ସମୁଦ୍ର ଗର୍ଭରେ ଦଧିକୁମ୍ଭଶୂନ୍ୟ ସେହି ସୁଗଠିତ ମନ୍ଦିରଟି ଦେଖା ଯାଉଥିଲା, ଅସ୍ତଗାମୀ ସୂର୍ଯ୍ୟର ଲୋହିତ ରଶ୍ମିରେ ସ୍ନାତହୋଇ ମାନବର ଅଦ୍ଭୁତ-କାର୍ଯ୍ୟଟାକୁ ବିଦ୍ରୂପ କଲା ଭଳି ଜଣାପଡୁଥିଲା— କାରିଗରମାନେ ଦୈନିକ କାର୍ଯ୍ୟ ସାରି ଚାଲି ଯାଉଛନ୍ତି – ଗୋଟିଏ ବାଳକ କେବଳ ଜନୈକରେ ସେହି ଦେଉଳର ଅଗ୍ରଭାଗକୁ ଚାହିଁ କେତେ କ'ଣ ଭାବିବାକୁ ଦେଖା ଯାଉଥିଲା – କିଛିକ୍ଷଣ ପରେ ଅତି ଚିନ୍ତାରେ ଅବସନ୍ନପ୍ରାୟ ହୋଇ ଗୋଟିଏ ଶିଳାଖଣ୍ଡ ଉପରେ ବସିପଡ଼ିଲା – ନିଜର କପୋଳଦେଶକୁ ଦକ୍ଷିଣକର ତାଳୁରେ ମର୍ଷଣ କରୁ କରୁ ଦୀର୍ଘନିଃଶ୍ୱାସ ତ୍ୟାଗ କଲା । ]

ଧର୍ମ୍ମା—କିଛି ଠିକ୍ କରିପାରୁ ନାହିଁ । ( ପୁଣି କେତେ କ'ଣ ଭାବିବାକୁ ଲାଗିଲା—ଅବଶେଷରେ ଠିଆହୋଇ, ସେହି ମନ୍ଦିରର ଭିତର ବାହାର, ଏ' ପାଖ ସେ ପାଖ, କେତେ କ'ଣ ପରୀକ୍ଷା କରିବା ପରେ ମନ୍ଦିରର ଚୂଡ଼ାଟିକୁ ସ୍ଥିରଦୃଷ୍ଟିରେ ଚାହିଁ ଠିଆହେଲା )

( ବିଷ୍ଣୁର ହାତ ହତିଆର ଧେନା ପ୍ରବେଶ )

ବିଷ୍ଣୁ—କିଏ ସେ ପିଲା ? —ଅଜକୁ ଅଠ ଦଶଦିନ ହେବ, ଅମେ ସବୁ କାମ ସାରି ଚାଲିଗଲାପରେ—( ଖୋଜୁ ଖୋଜୁ ) ଠିକ୍ ଏତିକିବେଳେ—ଅଜି କ'ଣ ଅସି ନାହିଁ ?—( ଦେଖି ) ଏହି, ଏହି ଯେ—ଜଃ । କି ଲମ୍ବରେ ଚାହିଁ ଠିଆ ହୋଇ ରହିଛି— ( ହାତ ହତିଆର ଥୋଇଦେଇ, ଅଗ୍ରସର ହୋଇ ପଛଅଡ଼ୁ ଧୀରେ ସ୍ପର୍ଶକରି ) ଅରେ ବାପ —

ଧର୍ମ୍ମା—( ସେହିପରି ନିଶ୍ଚଳଭାବରେ ଚାହିଁ ରହିଥିଲା )

ବିଷ୍ଣୁ—( ଅଙ୍ଗରେ ସ୍ପର୍ଶକରି ) ବାପ !

ଧର୍ମ୍ମା—( ହଠାତ୍ ଚମକିଉଠି ) କିଏ ? ବାବା — ବା —

( ଅତ୍ମସମ୍ବରଣ କଲା )

ବିଷ୍ଣୁ—'ବାବା' ! — ଡାକ, ବାପ ! — ଠିକ୍ ସେହି ଡାକ — ସେହି କଣ୍ଠସ୍ୱର—( ବାଳକ ପଳାୟନପଥ ଖୋଜିବା ) କେତେ କଳ୍ପନାରେ, କେତେ ସ୍ୱପ୍ନରେ ଯେ ମୁଁ ଶୁଣି ଅସ୍ଥିର ହୋଇ ଅଧେ ଅଖି ବୁଜା, ଅଧେ ଚଅଁ, ଡେଇଁ ଉଠିଛି — 'କାହିଁ କାହିଁ' ବୋଲି ଚାରିଅଡ଼େ ପାଗଳପରି ଧାଇଁ ଖୋଜି ବୁଲିଛି । ( ବାଳକ ପଳାୟନୋଦ୍ୟତ ହେଲା ) ପଳା ନା — ପଳା ନା. ବାପ—(ଧରି) ତୋତେ ଦେଖିଲିଦିନୁ ଯେ—

ଧର୍ମ୍ମା — ଛାଡ଼ ଦିଅ — ଛାଡ଼ ଦିଅ । ( ଛଡ଼ାଇବାକୁ ଚେଷ୍ଟା କରିବା )

ବଶୁ—ଛାଡ଼ ଦେବ – ଛାଡ଼ ଦେବରେ ବାପ, ଶରଦଚନ୍ଦ୍ରପାଇଁ – ଅଳ୍ପ ଗତ ପାଇଲେ, କାଲ୍ ଯେ କାଳ-ପ୍ରଭାତ –

ଧର୍ମ୍ମ—'କାଳ-ପ୍ରଭାତ' । – 'କାଲ୍' । – 'ଅଳ୍ପଗତ ପାଇଲେ' । – ଅସମ୍ଭବ, ଅସମ୍ଭବ – ମୋ'ର କାର୍ଯ୍ୟ ଯେ 'ପାଇ' ନାହିଁ, ବାବା । (ବେଗେ ପ୍ରସ୍ଥାନ)

ବଶୁ—'ବାବା' – 'ବାବା' – ଠିକ୍ ସେହି ଡାକ – ସେହିକଣ୍ଠ-ସ୍ୱର – 'ବାବା' – 'ବାବା' । – ଓଃ ଗୁଳିଗଲା, ଗୁଳିଗଲା । ( ନେପଥ୍ୟକୁ କିଛିକ୍ଷଣ ଗୁହିଁ ରହିଲେ ) କିଏ ସେହି ? – ପ୍ରକୃତରେ କି ସେହି ମୋ'ର ? – ଅସମ୍ଭବ, ଅସମ୍ଭବ – ମରୁ-ମରୀଚିକାରେ ଜଳ ଅସିବ କାହୁଁ ? କିନ୍ତୁ, କିନ୍ତୁ – ତଥାପି ପିଲାଟାକୁ ଦେଖିଲା ଦିନୁ, କେତେ କ'ଣ ସ୍ମୃତି ଯେ ଜଡ଼େଇ ଲହରୀ ପରେ ଲହରୀ ପରି ମୋତେ ଅଲୋଡ଼ିତ କରୁଛି – ଅହା ! ଟୋକାଟାର ଅଖି ଦି'ଟା ଯେମିତକା ଠିକ୍ ତାରି ନକଲ – ସେହିପରି ତଳ ତଳ – ସେହିପରି ଉଜ୍ଜ୍ୱଳ ! – କଳାଡୋଳା ଯୋଡ଼କ, ମାନସମୋହିନୀକୁ ମୋ'ର ଲୁଗୁଇ ରଖିଛି ଯେମିତ । – ହାୟ ! ( ଦୀର୍ଘନିଃଶ୍ୱାସ ତ୍ୟାଗପୂର୍ବକ ) ଆଜକୁ ବାର ବର୍ଷ ଗତ ହୋଇଗଲା, ପ୍ରତିବର୍ଷ ମନେ ହେଉଥାଏ—ଅଉ ବେଶୀ ଦିନ ନୁହେଁ – ଏହି କାମ ଶେଷ ହେଲା ବୋଲି – ଶୀଘ୍ର ଘରକୁ ଫେରିଯିବି – କେତେ ଯୁଗର ଅମାନିଶା ପରେ ପୁଣି ପୂର୍ଣ୍ଣଚନ୍ଦ୍ରୋଦୟ ଦର୍ଶନ କରିବି —ସଙ୍ଗେ ସଙ୍ଗେ ଯେଉଁ ସୁଧାର ଅଶାରେ କେବଳ, ଅମ୍ଭେ ଦୁହେଁ ତୃପ୍ତି ଲାଭ କରିଥିଲୁ – ତାହା ସମ୍ମୁଖେ ସଞ୍ଚିତହେବାକୁ ଦେଖିବୁ ! ଅହା ! କେଡ଼େଟିଏ ସେ ହୋଇ ନ ଥିବ ? ବାର ବର୍ଷର – ଠିକ୍ ଏହି ପିଲାଟି ପରି । – ଏ'ନୁହେଁ ତ ?

ଅସମ୍ଭବ—ସେ ଏ'ଠାକୁ ଆସିବ କପରି ? – ନା, ନା – ନିଶ୍ଚୟ ସେହି ମୋ'ର – ଓଃ । ମତ ବୋଧହୁଏ ମୋ'ର ସ୍ଥିର ନାହିଁ ।—( ସାମାନ୍ୟ ଜଳୁଉପ୍ରାୟ ଗୋଟିଏ ଶିଳାଖଣ୍ଡ ଉପରେ ବସିବାକୁ ଯାଉଥିଲା ବେଳେ ଧର୍ମ୍ମାର ପଶ୍ଚାଦ୍‌ଦିଗରୁ ପୁନଃ ପ୍ରବେଶ )

ଧର୍ମ୍ମା—ମିସ୍ତ୍ରିଏ ।

ବିଶୁ—( ଫେରିଗୃହିଁ ) ଏହି – ଏହି ଯେ – ଅ' ଅ' ବାପ – ମୋତେ ସେହି 'ବାବା' 'ବାବା' ବୋଲି ଡାକ— ତୋ'ର ଡାକରେ ଯେ—ଅଚ୍ଛା, ବାପ ସତକର କହନ ଭଲ –

ଧର୍ମ୍ମା —ତା' ହେଲେ ମୁଁ ଗୃଲିଲି––

ବିଶୁ—( ବାଧା ଦେଇ ଦେଇ ) ନା, ନା, ବାପ – ସେ କଥା କହନାହିଁ – ମୁଁ କିଛି ପଗ୍ଚରିବ ନାହିଁ – କିଛି ଜାଣିବାକୁ ଚେଷ୍ଟା ସୁଦ୍ଧା କରିବନାହିଁ – ଖାଲି ତୁ ମୋ' ଆଗରେ ଠିଆ ହୋଇଥା' – ଆଉ ଡାକୁଥା' ସେହି ମଧୁର ଡାକ, 'ବାବା' 'ବାବା'—ଡାକ, ଡାକ, ବାପ ।

ଧର୍ମ୍ମା — ଏତେ ଅଧୀର ହେଲେ କିନ୍ତୁ –

ବିଶୁ—( ଅତି ଅତୁରଭାବେ ) ବାପ ! ବାପ ! ତୁହି ଯେ ମୋତେ ଅଧୀର କରିଚୁ ବାପ ! – କାଲି ମୃତ୍ୟୁ –

ଧର୍ମ୍ମା — ମୃତ୍ୟୁ ! ( ନିଜପ୍ରତି ଧିକ୍‌କାରସୂଚକ ଭାବ ପ୍ରକାଶ କରିବା )

ବିଶୁ – ହଁରେ, ବାପ ! 'ମୃତ୍ୟୁ' – ମୃତ୍ୟୁ ଜାଣି ସୁଦ୍ଧା ମୁଁ ଏତେ ଅଧୀର ନୁହେଁ, ଯେତେ ଅଧୀର –

ଧର୍ମ୍ମା – ( ସ୍ୱଗତ ) ଓଃ – ମୃତ୍ୟୁ ! କପରି ପିତୃକାର୍ଯ୍ୟ ଉଦ୍ଧାର କରିବ ! ( ପ୍ରକାଶ୍ୟେ ) ଅଚ୍ଛା ମୁଁ 'ବାବା' ବୋଲି ଡାକିବି.

ଯଦି ଦୟାକରି ଏହି ଶିଳ୍ପ ସମ୍ବନ୍ଧୀୟ କେତେଗୁଡ଼ିଏ ସନ୍ଦେହ ମୋ'ର ମୋଚନ କରି ଦିଅନ୍ତ—

ବିଶୁ—( ସସ୍ମିତେ ) ଏହି ଘୁର କଥା—ପଗୁର, ପଗୁର, ବାପ—ଯେତେ ସନ୍ଦେହ ତୋ'ର ଅଛି—ଯେତେ ଗୁପ୍ତଜ୍ଞାନ ହେଉ ପଛକେ—ଏ'ପର କ'ଣ ତା' ଉପରେ ଅନ୍ତ୍ରପ୍ରତିଷ୍ଠା ପର୍ଯ୍ୟନ୍ତ ଯଦି ମୋ'ର ନିର୍ଭର କରୁଥାଏ, ତଥାପି ତାହା ମୁଁ ତୋତେ ସାନନ୍ଦେ ଦାନ କରିବି—ଅମ୍ଳାନ ଚିତ୍ତରେ ସମସ୍ତ ସନ୍ଦେହ ମୋଚନ କରିଦେବି—ବିନିମୟରେ ଗ୍ରହିବି, ଶୁଣିବି କେବଳ ସେହି 'ବାବା' 'ବାବା' ଡାକ।—ଡାକ୍—ଡାକ—

ଧର୍ମ୍ମା—ବାବା। ବାବା।—

ବିଶୁ—ଉଃ, କି ତୃପ୍ତି।—କହ, ବାପ। କି ତୋ'ର ପ୍ରଶ୍ନ ?

ଧର୍ମ୍ମା—ବାବା। ଏହି ନକ୍ଷତ୍ରର ମାଧ୍ୟାକର୍ଷଣ ବନ୍ଧୁଟା—

ବିଶୁ—'ମାଧ୍ୟାକର୍ଷଣ'।

ଧର୍ମ୍ମା—ହଁ, ବାବା। ମାଧ୍ୟାକର୍ଷଣ ବନ୍ଧଟା ଦେଉଳର ଠିକ୍ ମଝାମଝି ରହିଲେ କି ଏଠାରେ ଚଳିବ ?

ବିଶୁ—କିଏ ତୁହି, ବାଳକ ? ( ଆପାଦମସ୍ତକ ନିରୀକ୍ଷଣ କରିବା ) ଏ କଥା ତୁ ଜାଣିଲୁ କିପରି, ଟୋକା ?

ଧର୍ମ୍ମା—କାହିଁକି ବାବା, ପୋଥି ପଢ଼ି।

ବିଶୁ—ପୋଥି ପଢ଼ି। ଏପରି ପୋଥି ତ, ଏ ବାରଶ ବଢ଼େଇ ଭିତରେ ଏକା ମୋ' ଛଡ଼ା—

ଧର୍ମ୍ମା—ତୁମର ପ୍ରତିଜ୍ଞା ତୁମେ ପାଳନ କର, ବାବା। ନାହିଁ ତ ମୁଁ ଆଉ 'ବାବା' ବୋଲି—

ବିଶୁ—ନା, ନା, ବାପ। ସେପରି କହନା—ସେ ସୁଧାରୁ ମୋତେ ବଞ୍ଚିତ କରନା—ଅସହ୍ୟ ମୃତ୍ୟୁ—

ଧର୍ମା—'ମୃତ୍ୟୁ' । ( ଅସ୍ଥିର ହେବା )

ବିଶୁ—ହଁରେ ବାପ ! ଅସହ୍ୟ ମୃତ୍ୟୁ ଯନ୍ତ୍ରଣା ମୋ'ର ଭୁଲାଇ ଦେଇଛି, ତୋ'ର ସେହି 'ବାବା' 'ବାବା' ଡାକ ସିନା—

( ବାଳକକୁ ମୁଗ୍ଧ ନେତ୍ରରେ ଚାହିଁ ରହିବା )

ଧର୍ମା—କୁହ, କୁହ, ବାବା—ମୋର ପ୍ରଶ୍ନର କି ସମାଧାନ ?— ଆଉ ଯେ ବିଳମ୍ବ—

ବିଶୁ—ନା, ବାବା, ଆଉ ବିଳମ୍ବ କରିବି ନାହିଁ—କହ, କହ, କି ପ୍ରଶ୍ନ ତୋ'ର ?

ଧର୍ମା—ଦଧିନଉତିର ମାଧ୍ୟାକର୍ଷଣ ବିନ୍ଦୁଟା ଦେଉଳର ଠିକ୍ ମଝାମଝି ରହିଲେ କି ଏଠାରେ ଚଳିବ ?

ବିଶୁ—( ସସ୍ମିତେ ) ନିୟମ ସବୁଠାରେ ସମାନ, ବାପ—ଏ' ଅତି ଲଘୁ ସମସ୍ୟା । ଦେଉଳର ଭୂମିର କେନ୍ଦ୍ର ସଙ୍ଗେ ଦଧିନଉତିର ମାଧ୍ୟାକର୍ଷଣ ବିନ୍ଦୁଟି ଠିକ୍ ଲମ୍ବଭାବେ ନ ରହିଲେ ସ୍ଥିରତା କି—

ଧର୍ମା—ତା' ଜାଣେ, କିନ୍ତୁ ଦେଉଳର ଘନକେନ୍ଦ୍ର ଏହି ଲମ୍ବରେଖା ମଧ୍ୟରେ ରହିଲେ ତ ?

ବିଶୁ—ଦେଉଳଟି ସମପରିମିତଭାବେ ଗଢ଼ା ଯେତେବେଳେ, ତା' ରହିବା ତ ସ୍ୱାଭାବିକ ?

ଧର୍ମା—ସେଇଟା କଳ୍ପନା କରୁଛନ୍ତି ସିନା—

ବିଶୁ—ବାସ୍ତବରେ ତା' ହେଲେ ଦଧିନଉତି ପର୍ଯ୍ୟନ୍ତ ଦେଉଳଟି ଠିଆ ହୋଇଛି କିପରି ?

ଧର୍ମା—ଦଧିନଉତି ବା ବହୁ ନାହିଁ କାହିଁକି ?

ବିଶୁ—ସେ ଆମର ଅଦୃଷ୍ଟ ।

ଧର୍ମା—'ଅଦୃଷ୍ଟ' ।—ବାବା ! ବାବା ! ଆପଣ କାରିଗର ହୋଇ ଏପରି କଥା କହୁଚନ୍ତି—'ଅଦୃଷ୍ଟ' ! 'ଅଦୃଷ୍ଟ' !

ବିଶ୍ୱ—( ଦୀର୍ଘନିଃଶ୍ୱାସ ଛାଡ଼ି ) ବିଶ୍ୱପର ଭାରତର ଅଙ୍ଗ ଯେଉଁଠି ପରାସ୍ତ, ସେଠି ଅଦୃଷ୍ଟ ନୁହେଁ ତ ଅନ୍ୟ କ'ଣ ?

ଧର୍ମ୍ମ—ବାବା ! ବାବା ! ଏ କଥା କ'ଣ ବିଶ୍ୱପର ଭାରତର ଭ୍ରମରେ ସୁଦ୍ଧା ଜନ୍ମାଇ ପାରେ ?—ଅଦୃଷ୍ଟ ! ଅଦୃଷ୍ଟ !—କୁହ, ବାବା ! ଅତଳ ସମୁଦ୍ର ଗର୍ଭରେ ଏ ଯେଉଁ ଅଙ୍ଗ ବିଶାଳ ମନ୍ଦିରର ପତ୍ତନ ହୋଇଛି, ଯା'ର ସମ୍ଭବ ଅତୀତର କେଉଁ ଘନାନ୍ଧକାରରେ ଲୁକ୍କାୟିତ ଥିଲା—ତା'ର ପ୍ରୟାସରେ ବାବା ? ଆପଣଙ୍କର ନୁହେଁ କି ?—ମନ୍ଦିରର ଗାତେ ଗାତେ ଅଙ୍କ ଏ' ଯେଉଁ ବିବିଧ ଶିଳ୍ପଗୃତିରାଜି ପରିଶୋଭିତ, ଯାହାର ସମ୍ଭବ ଗୋଟାଏ ଅଳୀକ ସ୍ୱପ୍ନରେ ପର୍ଯ୍ୟବସିତ ଥିଲା—ତାହାର କୌଶଳରେ, ବାବା ? ଆପଣଙ୍କର ନୁହେଁ କି ?—ପ୍ରକୃତରେ, ବାବା—ଆପଣମାନେ ଯେ କି ଅବେଗ ଓ ତାଡ଼ନାରେ, କି ସଙ୍ଗୀତର ମୂର୍ଚ୍ଛନାରେ—ଓଡ଼ିଅର ବିଶ୍ୱ-ବନ୍ଦିତ ଏହି କଳାକୀର୍ତ୍ତି ଅଙ୍କ ମୂର୍ତ୍ତି କରିବାକୁ ଷମ ହୋଇଛନ୍ତି, ତାହା ମୋ'ର ଏ' କ୍ଷୁଦ୍ର ମସ୍ତିଷ୍କ ଧାରଣା କରିବାକୁ ଏକା-ବେଳକେ ଅକ୍ଷମ !—କେବଳ ମୋ'ର ସ୍ୱଜାତିର—ମୋ'ର ଦେଶବାସୀର ଏହି କୀର୍ତ୍ତି ଯେତିକି ଅବଲୋକନ କରୁଚି—ଯେତିକି ବିଶ୍ଳେଷଣ କରୁଚି—ମୋ' ହୃଦୟ ସେତିକି କେଉଁ ଉତ୍ସାହ ଲହରୀରେ ନାଚି ଉଠୁଚି—ମୋ'ର ମର୍ମ ସେତିକି କେଉଁ ସଙ୍ଗୀତର ଝଙ୍କାରରେ ଝଙ୍କାରିତ ହେଉଚି !—ବାବା, ବାବା ! ତୁମେ ଭାରତର—ଅଦୃଷ୍ଟର ଦୋହାଇ ଦେଇ କର୍ମହୀନ ହୁଅ ନାହିଁ । ଥରେ ହେଲା ନାହିଁ—ଦୁଇଥର ହେଲା ନାହିଁ——ଶହେଥର ହେଲା ନାହିଁ—ସହସ୍ରଥର ହେଲା ନାହିଁ—ଅବସାଦ କ'ଣ ? ଚେଷ୍ଟା—ଚେଷ୍ଟା—ଆଜୀବନ ଚେଷ୍ଟା—

ବଗୃରର ପରୀକ୍ଷା କାର୍ଯ୍ୟରେ—କାର୍ଯ୍ୟର ପରୀକ୍ଷା ବଗୃରରେ ।
—ଅସ୍ତ୍ରର କାର୍ଯ୍ୟ ବିଫଳ ହେଲ, ତା'ର କାରଣ ଅନୁସନ୍ଧାନ
କରିବା ଉଚିତ ନୁହେଁ କି ? ଦେଖ, ବାବା ! ବଗୃର କର
ଥରେ, ଏହି ମୁଣ୍ଡିଚା ମାରିବାମାନେ ଘନକେନ୍ଦ୍ର ସ୍ଥାନଭ୍ରଷ୍ଟ
ହେଉଛି କି ନାହିଁ ?

ବିଶ୍ୱ—ଅସମ୍ଭବ—ଅସମ୍ଭବ—ଏ' ବିଶୁ ମହାରଣାର କାର୍ଯ୍ୟ ନ
ହୋଇ ଅନ୍ୟ କାହାର ହୋଇଥିଲେ ସମ୍ଭବ ହୋଇଥାନ୍ତା ।

ଧର୍ମ୍ମା—ତେବେ ସୁଦ୍ଧା ଥରେ ପରୀକ୍ଷା—

ବିଶୁ—ପରୀକ୍ଷା—( ହସି ) ଅରେ, ବାପ ! ତୁ ବୋଧହୁଏ ବିଶୁ
ମହାରଣା ନାମ ଅଦ୍ୟୋ ଶୁଣି ନାହୁଁ—ତା'ର ଗଣନା
କେବେ ହେଲେ ଭୁଲ ହୁଏ ନାହିଁ—ତା'ର କାର୍ଯ୍ୟରେ
ତିଳେ ହେଲେ ତ୍ରୁଟି ନ ଥାଏ ।—ଯା' ଦେଖ —ତୋ'ର
ଯେତେ ବିଦ୍ୟାବୁଦ୍ଧି ଅଛି, ସବୁ ପ୍ରୟୋଗ କର ପରୀକ୍ଷା କର,
କେଉଁଠାରେ ଯଦି ଅଣୁ ମାତ୍ରାରେ ସୁଦ୍ଧା କୌଣସି ତ୍ରୁଟି ପାଉ ।

ଧର୍ମ୍ମା—ତ୍ରୁଟି ପାଇଅଛୁ, ବାବା !

ବିଶୁ—ତ୍ରୁଟି ପାଇଅଛୁ ? — ବିଶୁର ? — ତୁହି ? — ପିଲଟାଏ ?—
ଯେଉଁ ବିଶ, କୌଣସି ସମସ୍ୟାର ସାମାନ୍ୟ ବିବରଣ ଶୁଣିବା
ମାତ୍ରେ ଭାସ୍କରମାନଙ୍କର ତ୍ରୁଟି ଧରାଇ ଦିଏ ସେହି ବିଶୁ,
ଭାସ୍କର ଶିରୋମଣି, ତ୍ରୁଟି ରହିବ ନିଜ କାର୍ଯ୍ୟରେ, ସ୍ୱହସ୍ତ
ସମ୍ପାଦିତ—ଆଜି ତ୍ରୁଟି ଧରାଇ ଦେବ, ଜଣେ ସ୍ୱଳ୍ପମତି,
ଜ୍ଞାନହୀନ, ମୂଢ଼, ଶିଶୁମାନେ ?

ଧର୍ମ୍ମା—ତଥାପି ଅନୁରୋଧ, ବାବା — ଥରେ ଆସି ପରୀକ୍ଷାକର
ଦେଖନ୍ତୁ —

ବିଶୁ — ପରୀକ୍ଷା ? — ମୋର ଭୁଲର ? — ବିଶୁର ଭୁଲ ! ବିଶୁର ମୁହଁ
ଉପରେ ଏ' କଥା କହିବାକୁ —

ଧର୍ମ୍ମା—ମୋର ଭୁଲ କି ନୁହେଁ, ସେହି କଥା ପରୀକ୍ଷା କରିବାକୁ କହୁଛନ୍ତି, ବାବା ।

ବଣ୍ଣ—ପୁଣି ଅଛା ? 'ବାବା' ବୋଲି ଡାକିବାକୁ ପ୍ରଶ୍ରୟ ଦେଲି ବୋଲି କଣ ଏ' ପରିହାସ ?—ଏତେ ଗର୍ବ ତୋ'ର ? ଏତେ ଅହଙ୍କାର ? (ସଙ୍କୋଚେ କିଛିକ୍ଷଣ ଗୃହିଁଲା ପରେ·) ଯା' ଯା ଟୋକା—ତୁହି ବୋଲି ଆଜି ବଣ୍ଣୁକୁ ଏ' କଥା କହିଗଲୁ ।

ଧର୍ମ୍ମା—ବାବା ! ବାବା ! କ୍ଷମା କର—ଦୋଷ ହୋଇଛି । ( ପଦପ୍ରାନ୍ତେ ଅବନତ ହେବା ) (ସ୍ୱଗତ) ଅଳ୍ପତେ ପିତାର, ପିତୃ-କୀର୍ତ୍ତି ସମାଧାନ, କାର୍ଯ୍ୟ ଥିଲା ମୋର—

ବଣ—( ସସ୍ନେହେ ଉଠାଇ ଉଠାଇ ) ଉଠ, ଉଠ, ବାପ ! କ୍ଷମା ଯେ ଅଉ ମାଗିବାକୁ ହେବ ନାହିଁ—ତୋର ଏହି 'ବାବା' 'ବାବା' ଡାକ, ଆଉ ସେହି ଆଖି ଯୋଡ଼ିକ ଯେ ସବୁ ଭୁଲାଇ ଦେଇଛି—ମୋ'ର ସବୁ କାଢ଼ି ନେଇଛି ।—ଆ, ଆ' ବାପ— ଏହି ମରଣକାଳେ— ( ଆଲିଙ୍ଗନ କରିବାକୁ ଯିବା )

ଧର୍ମ୍ମା—( ସ୍ୱଗତ ) 'ମରଣକାଳେ' । ଓଃ । ( ବେଗେ ପ୍ରସ୍ଥାନ )

ବଣ୍ଣ—ଯା' ନା—ଗୃଲି ଯା' ନା, ବାପ !—ତୁ କ'ଣ ରାଗିଗଲୁ, ବାପ ?—ଯିବି, ଯିବି—କଥା ତୋ'ର ଶୁଣିବି—ଭଲ ଭଲ କରି ପରୀକ୍ଷା କରି ଦେଖିବି—ଆ, ଆ' ବାପ—ଆଜି ରାତିକ ମାତ୍ର ଅବସର—ଅବସର ? ଅବସର କାହିଁ ?—ନା— ( ହାତଅର ଉଠାଇଲେ ) ମୋତେ ଆଜି ଅବିଶ୍ରାନ୍ତ ଚେଷ୍ଟାକରି ଏହି ରାତିକ ଭିତରେ ଯେ କୌଣସିମତେ 'ମୁଣ୍ଡି' ମାରିବାକୁହିଁ ହେବ—ତା' ନ ହେଲେ କାଲି ସକାଳେ ମୁଣ୍ଡକାଟ—ଏକା ମୋ'ର ନୁହେଁ, କି ଦୁଇଜଣର ନୁହେଁ—ଏ' ଯେ ଶତ, ଶତ

—ସହସ୍ର, ସହସ୍ର ଜଣର ମୁଣ୍ଡକାଟ—ଗୋଟାଏ କାଁଇର—ସମସ୍ତ ଶିଳ୍ପିର—ଓଃ । ମୋ’ର ଏତେ ପୋଥି ପଢ଼ିବା—ଏତେ ଖ୍ୟାତି ଅର୍ଜନ କରିବା କ’ଣ ସବୁ ଅକାରଣ ହୋଇଗଲା ? —ଟୋକାଟା କହୁଚି, ମୁଣ୍ଡି ମାରିବା ମାନେ ଘନକେନ୍ଦ୍ର ସ୍ଥାନଭ୍ରଷ୍ଟ ହେଜାଚ—ଏ’ ଅତି ସୂକ୍ଷ୍ମ ବିଚାର—ସେ ଟୋକାଟା ଏ ବୃହତ୍ ବିଜ୍ଞାନତଥ୍ୟ ଜାଣିଲା କେଉଁଠୁ ? ଏ’ପରି ପୋଥିତ ଆଜ କାହାର ଘରେ ନାହିଁ ? ଗୁଡ଼—ପ୍ରକୃତରେ କି ଏହା ଘଟୁଚି ?—କେଉଁଠାରେ କ’ଣ କିଛି ମୋଡ଼ ରହିଯାଇଛି ? ମୋ’ର ଭୁଲ ହୋଇଚି ?—ଭୁଲ । ବିଶୁର ଭୁଲ ।—ବିଶୁ ଭୁଲରେ ବି ଯାହା କରେ, ତାହା ମଧ୍ୟ ନିର୍ଭୁଲ ହୁଏ ।—ଜାଣୁନା କିରେ, ବିଶୁ କାହାର ବଂଶଧର ?—

ଯେଉଁ ବିଶ୍ୱକର୍ମା
ଗଢ଼ିଛନ୍ତି ନୀଳାଚଳଧାମେ—
ସୁରଶିଳ୍ପି ଶିଳ୍ପକଳଶଳ
କରି ପରାଭୂତ,
ହିନ୍ଦୁର ସର୍ବସ୍ୱ ଧନ
ମହାକୀର୍ତ୍ତି ମହାମନ୍ଦିର ସେ
ବିଶ୍ୱର ବନ୍ଦିତ ;—
ଯେଉଁ ବିଜ୍ଞାଣିର
ବିଜ୍ଞାଣ ଗାରିମା
ଅଦ୍ୟାପି ରକ୍ଷିତ ଟେକି
ଏକାମ୍ର କାନନେ
ଏକଲିଙ୍ଗ ସୌଧଶିଖା—
ଗଗନବିହାରୀ

ଫଣିଫଣା ଯଥା
ଜଟାଧର ଶିରେ;—
ଯେଉଁ ଭାସ୍କରର
ଭାସ୍କର୍ଯ୍ୟ କୌଶଳ
ପ୍ରତିଭାତ ସ୍ତରେ ସ୍ତରେ
ବରଜାଙ୍କ ଦ୍ୱାରେ,
ଠୁଲ ଯେଉଁକେ ଅଳଙ୍କାର
ସୌନ୍ଦର୍ଯ୍ୟ ନିକର,
ଜନନୀ ପ୍ରସାଦେ, ସର୍ତ୍ତ୍ୟଧାମେ ଏହୁ ;—
ତାଙ୍କର ପବିତ୍ର ବଂଶେ
ଜନ୍ମି ଅଛୁ ମୁହିଁ—
ତାଙ୍କର ଶୋଣିତ ବହେ
ଅଙ୍ଗେ ଅଙ୍ଗେ ମୋର—
ପ୍ରତି ଶିରେ ଶିରେ,
ପ୍ରତି ଲୋମକୂପେ—
କରିପାରେ କେବେ କି ସେ ଭ୍ରମ ?
ଜ୍ଞାନ, ବୁଦ୍ଧି, କଉଶଳେ
ବଳିଯିବ ଏମନ୍ତ ଭାସ୍କର,
ଅଛୁ କି ଜଗତେ ?
ସ୍ଥିର ବାଳକ ଗୋଟାଏ—
ନିର୍ବୁଦ୍ଧି, ନିରେଖ—
ଦେଖିନାହିଁ 'ଅ' 'ଆ' ମୁଖ,
କହୁଲ ସଦମ୍ଭେ—ମୁଖେ ପୁଣି ମୋ'ର,
'ଧରିଅଛୁ ତ୍ରୁଟି'—ମୋ'ର ତ୍ରୁଟି ।

ଓଃ—ଶେଲ ସମ ବିନ୍ଧଇ ମରମେ;
କି ଯେ ବ୍ୟଥା !—କି ଯେ ଜ୍ୱାଳା !

[ ବାକ୍ୟରେ ପ୍ରକାଶ କରିବାକୁ ଅସମର୍ଥ ହୋଇ ଭାବଭଙ୍ଗୀ ଦ୍ୱାରା ଅନୁଭବ କରିବାର ଭାବ ପ୍ରକାଶ କଲେ ]

କାହିଁଛନ୍ତି ଶିଳ୍ପିଗଣ ?
ଆସ ବେଗ କରି—
କର ସାହାଯ୍ୟ ପ୍ରଦାନ,
କୃତକାର୍ଯ୍ୟ ଏହିଥର ଆମ୍ଭେ ;—
କରିବ ସ୍ଥାପନ—ପୂର୍ଣ୍ଣ ହେବ କାର୍ଯ୍ୟ—
ଦେଖାଇବ ସେ ବାଳକେ
ଜ୍ଞାନର ଗାରମା ମୋ'ର—ନିଭୁ'ଲ ବିଗ୍ଭର ।
ଓଃ !—ଧ୍ୱନିତ ଅଦ୍ୟାପି, କିନ୍ତୁ ସେହି—
କର୍ଣ୍ଣେ, କର୍ଣ୍ଣେ ମୋ'ର—ମର୍ମ୍ମେ, ମର୍ମ୍ମେ ଯେପରି—
'ତ୍ରୁଟି ପାଇଅଛୁ'—'ତ୍ରୁଟି ପାଇଅଛୁ' ।

[ କାରିଗରମାନଙ୍କର ପ୍ରବେଶ ]

୧ମ କାରିଗର—ବିଶୁ !—

ବିଶୁ— ଏହି ଯେ ଭାଇମାନେ ମୋର !—
ଆସ, ଆସ, ଭ୍ରାତୃଗଣ
ଶେଷ ପ୍ରୟାସ ଆମ୍ଭର,
ମରଣ ପ୍ରୟାସ,—
ଲଗିବା କାର୍ଯ୍ୟରେ—
ତୋଳିବା ଅଚୁର ଥରେ ;
ଦୃଢ଼ ବିଶ୍ୱାସ ମୋହର,
କୃତକାର୍ଯ୍ୟ ହେବା ନିଶ୍ଚେ ;—

ଶୋଭବ ମସ୍ତକ—
ମୁଗ୍ଧ ହେବେ ଚରାଚର
ବୁଦ୍ଧିର କୌଶଳେ—
ଅମର କୀରତ ଅମ୍ଭ,
ରହିବ ଭୂତଳେ ।

୧ମ କାର୍—ଛାଡ଼ ସେହୁ ବୃଥାକଥା—
କହ, ଅଛୁ
ଜୟାଯୁ ଯେବେ କି କରୁ—
ହେଲେଟି ଅକୃତକାର୍ଯ୍ୟ ?

ଧର୍ମ୍ମା—( କହୁ, କହୁ ପ୍ରବେଶ )
ଲେଟିବ ମସ୍ତକ ଧରିବକ୍ଷେ ଏହି—
କି ଶୋଚନା ସେଥିପାଇଁ ?
ଅସିଅଛୁ ରଣକ୍ଷେତ୍ରେ
ଯୁଦ୍ଧର ନିମନ୍ତେ—
ଜିଣିଲେ ବିଜୟ-ଟୀକା,
ମଲେ ସ୍ୱର୍ଗବାସ ;—
ଆତ୍ମସମର୍ପଣ—ଦୁର୍ବଳତା ଜାଣେ
ପଳାୟନ ଯୁଦ୍ଧକ୍ଷେତ୍ରୁ ଭିକ୍ଷୁର ସମାନ—
ଯୋଗ୍ୟ କି ଅମ୍ଭର,
ଥାଉଁ ଏ ପରାଣ,
ବହି ମାନବର ଦେହ ?

ସମସ୍ତେ—କିଏ, କିଏ ଏ’ ଅଦ୍ଭୁତ ବାଳକ ! (ସାଶ୍ଚର୍ଯ୍ୟେ ଗୃହିଁଲେ)

ବଣ୍ଣ—( ହିଂସାପୂର୍ଣ୍ଣ ନେତ୍ରରେ ଚୃହିଁ—ସ୍ୱଗତ ) ‘ଆତ୍ମ-ସମର୍ପଣ !’
ଅସମ୍ଭବ—ଅସମ୍ଭବ,

ଜ୍ଞାନହୀନ ଶିଶୁଠାରେ ?—
'ପଳାୟନ' ।—'ପଳାୟନ' ।
ଅସମ୍ଭବ—ଅସମ୍ଭବ,
ସାମାନ୍ୟ ଶିଶୁର ଭୟେ ?

( ପ୍ରକାଶ୍ୟେ ) ଅସ, ଅସ ଭ୍ରାତୃଗଣ ।
ତ୍ୟଜ ଅବସାଦ—କରବା ପ୍ରୟାସ—

୧ମ ବୀର—ବଣ୍ଣ । ତାହିଁଙ୍କ ଏ' ବୃଥା ଚେଷ୍ଟାରେ ଅଉ ଅମ୍ଭମାନଙ୍କୁ ମତାଉଛୁ ? ଚେଷ୍ଟା କର କରତ ଚେଷ୍ଟାର ଫଳ କେତେଥର ଦେଖି ସାରଲୁଣି—ବରଂ ଅଳ୍ପ ଗୁଡ଼ଟା—

୨ୟ ବୀର—ଯାହା କହୁଚୁ, ଭାଇ—ଟିକିଏ ମଜଜରେ କଟାଇଲେ ବାମ୍—ମୁଣ୍ଡକୁ ପାଣି ଛଡ଼େଇ ଦେଇ ସାରଚୁ ନା ଅଉ ବାକି ଅଛି ?

ଧର୍ମ୍ମ—ଏ'ଙ୍କ ବାକ୍ୟ ତବ
ହୋଇ ଶିଳ୍ପି-ବଂଶଧର ?
ବୀର ତୁମ୍ଭେ—ବୀରର ସନ୍ତାନ,
ବୀର-ରକ୍ତ ଖେଳେ ଧମନୀରେ ।—
ଉଠ, ଉଠ, ନ କର ବିଳମ୍ବ—
ଉଠ ମାତ ସ୍ମର ପୂର୍ବ୍ବବଳ ;
ତ୍ୟଜ ଅବସାଦ—
ଥରେ ମାତ୍ର, ଥରେ ମାତ୍ର ଅଉ—
ଶିଶୁର ପ୍ରାର୍ଥନା—ଆକୁଳ ମିନତି—
ପଶନ୍ତେ ସଂଗ୍ରାମେ,
ଘେନ ସେହି ବୀର୍ଯ୍ୟ ଶୌର୍ଯ୍ୟ—
ସେହି ଉଦ୍ଦୀପନା ଉଜ୍ଜ୍ୱଳ,

ଅଗ୍ରସର ଏତେଦୂର
ଯାହା ବଳେ ଅଜ୍ଞ;—
ବାଙ୍କି ସ୍ୱଳ୍ପ ସିନା ?
ଏହିଠାବେ ରଣରଙ୍ଗ
ଦେଲେ ବି ଅଧୁନା,
ସ୍ତୂପୀଭୂତ ହୋଇ ବଣ
ରହିବ ବିସ୍ମୟେ,
'ଅସମ୍ଭବ ହୋଇଛି ସମ୍ଭବ';—
ମାତ୍ର, କର ଯଦି ଉଦ୍‌ଯାପନ ବ୍ରତ—
ତବକ ସମାନ
ଏହି ଦୃଶ୍ୟ-ଚିତ୍ର ଦେହେ
ସ୍ଥାପହେ ମସ୍ତକ,
ଜୀବନ୍ତ କୀରତି ସିନା
ଲଭିବ ଏ' ଅନ୍ତେ—
ମର ହୋଇ ମର୍ତ୍ତ୍ୟେ ସିନା
ରହିବ ଅମର !
ହେର, ହେର ସମ୍ମୁଖେ ଅମ୍ବର,
ନୁହେଁ ବହୁଦୂର—
ଫିଟିଛି ଦୁର୍ଗର ଦ୍ୱାର;
ନ ଫେର—ନ ଫେର,
ହୁଅ ଅଗ୍ରସର,
କର ଅଧିକାର, --
ଉଡ଼ାଅ ବିଜୟ ଧ୍ୱଜା,
ବଜାଅ ବିଜୟ ଡଙ୍କା—

ବିଜୟ ମୁକୁଟ ଚିର
ଘେନ ହେ ମସ୍ତକେ ।

ବଶୁ—( ସ୍ୱଗତ ) ଓଃ—କି ଲୁହାଳିଆ କଥା ଏ' ଟୋକାର ।—

[ ଶିବେଇ ସାନ୍ତ୍ରୀର ପ୍ରବେଶ ]

ଶିବେଇ—ବଶୁ । ଏ କ'ଣ କହୁଚ ବୁଝିଲୁ ?—ମୋ' ମୁଣ୍ଡରେ, ଭାଇ, ଆଉ କିଛି ପଶୁ ନାହିଁ । ଅରେ ଟୋକା । ତୁ ଯେବେ ପାରିବୁ ତ କର ।

୨ୟ କାରି—ବୁଝିବାର ହବବା କ'ଣ ?—ସେ କର ଦେଉନା—କଣ କହୁଚୁ, ବଶୁଭାଇ ?

୧ମ କାରି—ଠିକ୍ କହୁଚୁ, ଭାଇ ।

ବଶୁ—( ସ୍ୱଗତ ) ଓଃ । କି ଲଜ୍ଜା । କି ଅପମାନ ।
( ପ୍ରକାଶ୍ୟେ ) ତୁ' କଣ ପାରିବୁ ଟୋକା ?

ଧର୍ମା—ବିଶ୍ୱରରେ ଦେଖେ ଯେତେହୁର,
ହୋଇବ ସଫଳ ।

ବଶୁ—( ସ୍ୱଗତ ) 'ହୋଇବ ସଫଳ'—
ପରାସ୍ତ ହେବେ କି
ବିଶ୍ୱଜୟୀ ବଶୁ ଅଜି,
ଶିଶୁ ସଙ୍ଗେ ରଣେ ?

ଶିବେଇ—ଅଉ ଭାବୁଚୁ କ'ଣ, ବଶୁ ? ଟୋକାଟା କାମରେ ଦେଖାଉ ନା ?

ଧର୍ମା—ଏହୁ କି ଆଦେଶ, ଶିଳ୍ପପତି ତବ ?

୧ମ କାରିଗର—ଅରେ ଉମତମାଳିଆ କଥା ଛାଡ଼ । ପାରିବୁ ତ କର, ନାହିଁ ତ ଏ'ଠୁ ଗୁଲ୍ ଯା' ।

ଶିବେଇ—ହଁ, ହଁ, କଥାଘା'ରେ ଅଉ ଲୁଣ ଛିଟା ଦେ'ନା ।

ଧର୍ମ୍ମା—( ବଣ୍ଟୁ ନିକଟକୁ ଯାଇ, ଅବନତ ହୋଇ )

ଦିଅ ଗୋ ଅଦେଶ, ପିତଃ । କର ହେ ଅଶୀଷ –

ବଣ୍ଟୁ— ( ପ୍ରକାଶ୍ୟେ ) ଅଶୀଷ । ( ସ୍ୱଗତ ) ଅଶୀଷ ମୋହର—ମୃତ୍ୟୁ ତୋ'ର । ( ପ୍ରକାଶ୍ୟେ ) ଭାଇମାନେ । ତୁମ୍ଭେମାନେ କ'ଣ ପାଗଳ ହେଲ ? ପିଲାଟାଏ, ଗାଲ ଚିପିଦେଲେ ଦୁଧ ବାହାରିବ, ତା'ଉପରେ ତୁମେମାନେ ନିର୍ଭର ହୋଇ, ଜାଣିଲା ଶୁଣିଲା ଲୋକ ହୋଇ—ନିର୍ଭର କର ନିଶ୍ଚିନ୍ତ ହେଉଛ ନା ?

୧ମ ଢାଲ୍—ଅରେ ଭାଇ, ଅମେତ ବହୁକାଳୁ ନିଶ୍ଚିନ୍ତ. ମରଣ ନିଶ୍ଚିତ ଜାଣି—ବରଂ ସେ ଯୁଦ୍ଧ ପାରିଲା –

ବଣ୍ଟୁ—( ସ୍ୱଗତ ) 'ପାରିଲା' । ଏ' ନିବୁଦ୍ଧିଆ ଚୌକାଣ୍ଡ । —

ପାର ନାହିଁ ଯାହା ମୁହିଁ,
ସୁପଣ୍ଡିତ ଶାସ୍ତ୍ରେ—
ଅଜୀବନ ଜୟ-ଲକ୍ଷ୍ମୀ
ବନ୍ଧା ଯା'ର କାର୍ଯ୍ୟେ ।

( ପ୍ରକାଶ୍ୟେ ) ଭାଇମାନେ । ପାଗଳ କି ହୋଇଅଛ ତୁମ୍ଭେ ?—

୧ମ ଢାଲ୍—ହଁ, ଅମେ ପାଗଳ – ଅମକୁ ବିଦାୟ ଦିଅ – ତୁମେ ଦୁହେଁ ବୁଢ଼ା ବୁଢ଼ି ହେଉଥାଅ । ଅସ ହେ, ଅଜି ପାଚକ-ପାଣିଟା ଭଲ କରି ମସଲା ମସଲି ଦେଇ ଛଅରିକିକି ମନମଉଜରେ ସ୍ୱାଉଟା କଟାଇ ଦେବା;—ମରିଗଲେ ଅଉ କି ଏ' ଯୋଗ ମିଳିବ ?

[ ବଣ୍ଟୁ ଓ ଧର୍ମ୍ମା ବ୍ୟତୀତ ସମସ୍ତଙ୍କର ପ୍ରସ୍ଥାନ ]

ଧର୍ମ୍ମା—( ସ୍ୱଗତ ) 'ମରିଗଲେ' । ( ପ୍ରକାଶ୍ୟେ, ଅତି କାତର ଓ ବ୍ୟସ୍ତ ଭାବେ ନତଜାନୁ ହୋଇ ) ଅଦେଶ, ପିତଃ ।

ବସ୍ତୁ—( ଶ୍ଳେଷଭାବେ ) 'ପିତଃ' ।—'ପିତଃ' ।—କିଏ ତୋର
ପିତା ?—କିଏ ତୁହି ? ବସ୍ତୁ ସଙ୍ଗେ ପ୍ରତିଦ୍ୱନ୍ଦୀ—

ଧର୍ମ୍ମ—ପିତା ସଙ୍ଗେ 'ପ୍ରତିଦ୍ୱନ୍ଦୀ' ।—
( କ୍ଷଣକାଳ ରହି ) ହିଁ, ହିଁ, ପିତା ।
ପ୍ରତିଦ୍ୱନ୍ଦୀ ମୁହିଁ, ପିତୃକାର୍ଯ୍ୟ ସମାଧାନେ ।

ବସ୍ତୁ—( ସ୍ୱଗତ ) 'ପ୍ରତିଦ୍ୱନ୍ଦୀ ମୁହିଁ' । 'ପିତୃକାର୍ଯ୍ୟ ସମାଧାନେ' ।
ଓଃ—କି ବିଦ୍ରୂପ ପିତୃନାମ ଛଳେ ।—
ଅସହ୍ୟ । ଅସହ୍ୟ ।

ଧର୍ମ୍ମ—ପିତଃ ।—ଦିଅ ଗୋ ଆଦେଶ—
[ ବସ୍ତୁ ପ୍ରସ୍ଥାନୋଦ୍ୟତ ହେବାକାଳେ, ଧର୍ମ୍ମ ବସ୍ତୁର ଚରଣ ଧରିବା; କିନ୍ତୁ ବସ୍ତୁ ଉପେକ୍ଷା କରି ଚାଲିଯିବାରୁ ଧର୍ମ୍ମ କିଛିକ୍ଷଣ ନିର୍ବାକ ହୋଇ ରହି, କ୍ରମେ ଉତ୍ତେଜିତ ହୋଇ ଧୀରେ ଠିଆ ହେବା ]

ଧର୍ମ୍ମ— ଅହଙ୍କାର—ଅହଙ୍କାର ଏହି,
ଯୋଗ୍ୟ ତବ ପିତା ।—
ଅହଙ୍କାର ଅଟେ
ବୀରର ସାହସ, ଦମ୍ଭ, ବଳ
ସମର ପ୍ରାଙ୍ଗଣେ ।—
ଅହଙ୍କାର—ଅହଙ୍କାର ମୋ'ର, ପିତା ।
ତବ ପୁତ୍ର ମୁହିଁ—
( ଅନବତ ହୋଇ ) ମା ଗୋ । ଦିଅ ପଦରଜ ତବ—
ଶାଣିତ କୃପାଣ ମୋ'ର ।—
ଆଶୀର୍ବାଦ ତବ—
ଅଭୟ କବଚ ଦୃଢ଼ ।—

ପଶେ ରଣାଙ୍ଗନେ—
ଯୁଦ୍ଧେ, ବୀରଗର୍ବେ ମୁହିଁ—
ସୁଭଦ୍ରା-ସନ୍ତାନ ଯେସନ୍ତେ,
ସପ୍ତରଥୀ ମଧ୍ୟେ ।
( ଉଠି, ଠିଆହୋଇ ) ଅସ, ଅସ, ପୂର୍ବ ପୁରୁଷ ସକଳ ।
ଡାକଇ ସାଦରେ.—
ଓହ୍ଲାଇଣ ଦିବ୍ୟପଥେ ତବ,
ଖୋଦିତ ସ୍ତବକରେ
ସେହୁ, ସେହୁ
ଶିଳ୍ପସ୍ତମ୍ଭ ଗାତ୍ରେ—
ଗଠିତ ହୃଦୟ-ରକ୍ତେ ଯାହା
ଖଣ୍ଡଗିରି, ପୁରୀ,
ଯାଜପୁର, ଭୁବନେଶ୍ୱରେ;—
ଅସ ତ୍ୟଜି ଦିବ୍ୟଧାମ ତବ,
କ୍ଷଣକାଳ ପାଇଁ,—
ଆଶିଷ ମସ୍ତକେ, ଆଶିଷ ଏ' ଶିଶୁକରେ ।—
ଦିଅ ସେହୁ ଶକ୍ତି, ସେହୁ ନିର୍ମାଣ-କୌଶଳ—
ବଳେ ଯା'ର,
କରେ ପୂର୍ଣ୍ଣ ମନ୍ଦିରର ଚୂଡ଼ା,
ପୂର୍ଣ୍ଣକରେ ପିତୃକାର୍ଯ୍ୟ—
ଜାତିକାର୍ଯ୍ୟ ମୋ'ର ।

[ନେପଥ୍ୟେ ଅତି ଦୂରଦେଶୁଁ ସରବ ସଙ୍ଗୀତ—
'ହୁଅ ଧନ୍ୟ—ହୁଅ ଗଣ୍ୟ—ହୁଅ ବୀର ବରେଣ୍ୟ'
ପବନ ହିଲ୍ଲୋଳରେ ଭାସି ଭାସି ଅସୁଥିଲା ]

ଧର୍ମ୍ମ ।—( କେତେକ୍ଷଣ ଉନ୍ମନା ହୋଇ ସେହି ସଙ୍ଗୀତ ଶୁଣୁ ଶୁଣୁ ଉତ୍ସାହିତ ହୋଇ ଉଠିଲ )

ସର । ସର । ଏତେ ଦୂରେ ଥାଇ,
ଏତେ ନିକଟରେ ।—
ସତ୍ୟ, ମହାଶକ୍ତି ତୁମ୍ଭେ,
କାର୍ଯ୍ୟର ସଙ୍ଗିନୀ ।—
ମହା ସଙ୍ଗୀତ ଧ୍ୱନିତ
ତୁମ୍ଭର ସଙ୍ଗୀତେ ।

( ସୋତ୍ସାହେ କାର୍ଯ୍ୟ କରିବାକୁ ଲଗିଲ )

---

ଦ୍ୱୋଡ଼ ଦୃଶ୍ୟଃ—

[ ମନ୍ଦିରର ଚୂଡ଼ାଟି ସ୍ଥାପିତ ହୋଇ ଯାଇଛି । ଧର୍ମ୍ମା ଗୋଟାଏ ପ୍ରସ୍ତରସ୍ତୂପ ଉପରେ ନିଦ୍ରାଭିଭୂତ ହୋଇ ସ୍ୱପ୍ନ ଦେଖୁଥିଲା—ସର ଯେପରି ବିଜୟମାଲ୍ୟ ନେଇ ଗାନ କରୁ କରୁ ତା'ର ଗଳାରେ ପିନ୍ଧାଇ ଦେବାକୁ ଆସିଛି—

ସର — ଗୀତ

ଆସିଛି, ଆସିଛି, ସଖା ! ପିନ୍ଧାଇବି ଗଳେ;
ସଜାଇବି ବୀରବକ୍ଷ, ଉଜ୍ଜଳିବ ମାଳେ ।
ଫୁଲ ମଲ୍ଲି ତାରାଦଳ ଏ ଫୁଲ ଦେଇଛନ୍ତି ତୋଳି,
ମଳୟ, ସୁରଭି ଦିବା—ସୁଧାକର, ସୁଧା ଢାଳି—
ଅଧର ହସଟି ମୋ'ର ଗୁନ୍ଥିଛନ୍ତି ଏ ମାଳେ ॥

—ଏହି ସମୟରେ ଭୀଷଣ କାଳପୁରୁଷ ପରି ଜଣେ କିଏ ଗୁପ୍ତ ଛୁରିକା ହସ୍ତରେ ଆସି ମଧ୍ୟସ୍ଥଳରେ ଠିଆହେଲା;—ଧର୍ମ୍ମା ଚିତ୍କାର କରି ଡେଇଁ ଉଠିଲା—ଏହା ପୂର୍ବରୁ ବିଶୁ ଛୁରିକା ହସ୍ତରେ ପ୍ରବେଶକରି ଧର୍ମ୍ମାର ଅଲକ୍ଷ୍ୟରେ ତା'ର ପଶ୍ଚାତ୍-ଦେଶରେ ଠିଆହୋଇ ତାକୁ ହତ୍ୟା କରିବାକୁ ଉଦ୍ୟତ ହୋଇଥିଲା ]

ଧର୍ମ୍ମା—ବାବା ! ବାବା ! (ଅର୍ଦ୍ଧ ମଳ୍ପମଳ୍ପ ଗୃହଅଭ୍ୟ ନିରୀକ୍ଷଣ କରି)

ବଶୁ—'ବାବା' ! 'ବାବା' ! ( ଉତ୍ତୋଳିତ ଛୁରୀକା ସ୍ୱତଃ ଅବନତ ହୋଇଗଲା ) ( ନିଜମନେ ) ନା,—ନା—ତୁହ—ତୁହ—

( ବାଳକର ଅଲକ୍ଷ୍ୟେ ପୁଣି ଛୁରୀକା ଉଠାଇଲା ବେଳେ )

ଧର୍ମ୍ମା—( ପିତାଙ୍କୁ ଦେଖି ) ବାବା ! ବାବା !

( ପଦପ୍ରାନ୍ତେ ଅବନତ ହୋଇ )

ପିତୃକାର୍ଯ୍ୟ ହେବ ହୋଇଛୁ ସମ୍ପନ୍ନ—
ପିତୃନାମେ ଆଜି ବାଜିବ ଦୁନ୍ଦୁଭି ।
ପିତୃ ଅହଂକାର—ପିତାର ମୋହର
ବଂଶର ଗାରିମା, ରହିବ ଅକ୍ଷୁଣ୍ଣ—
ନା, ନା, ଉଜ୍ଜ୍ୱଳ ଉଜ୍ଜ୍ୱଳତର
ହେବ ଦିନୁ ଦିନୁ,
ନବୀନ ତପନ ଯଥା ତେଜେ କ୍ରମେ କ୍ରମେ
ଲଭେ ପରିଣତ ମହା ପ୍ରଚଣ୍ଡ ମାର୍ତ୍ତଣ୍ଡେ;—
ନିଅ, ପିତା !—ନିଅ କୋଳେ ତୋଳି,
ଦିଅ ଚୁମ୍ବ—ଦିଅ ସୁଧା,
ସେହି ସୁଧାଧରୁ ତବ !—
ଲଭିଯାଉ କ୍ଷୁଧା, ତୃଷା ସୁଦୀର୍ଘ ସଞ୍ଚିତ—
ଭୁଲିଯାଏଁ କ୍ଷଣେ ମୁହିଁ ନିଜକୁ ନିଜର ।

ବଶୁ— ଆ', ଆ'ରେ ଧନ ମୋ'ର !—
ହୃଦୟର ଧନ—ଜୀବନର ଧନ ( ଛୁରୀକା ବାଳକର ଅଲକ୍ଷ୍ୟେ ହାତରୁ ଖସିପଡ଼ିବା ଓ ବାହୁ ଅଗ୍ରହସହକାରେ କୋଳ କରିବାକୁ ଯାଇ )
ନା, ନା—ଦୂର ହ—ଦୂର ହ—

ଧର୍ମ୍ମ— ପିତା !—ପିତା ! କାହିଁ ଏ ଭର୍ତ୍ସନା ?
କିପାଇଁ ବଞ୍ଚିତ ଶିଶୁ ପିତୃକୋଳ ସୁଖୁଁ ?
କିବା ଦୋଷ, କହ ପିତା ! କରିଅଛି ପଦେ ?—
( ପିତୃଚରଣ ଧାରଣ )

ବଭ୍ରୁ—( ସସ୍ନେହେ ଉଠାଉ ଉଠାଉ ) ଉଠ, ଧନମଣି !—ଅଁରେ
ପୁତ୍ର ମୋ'ର—(କୋଳ କରିବାକୁ ଯାଇ ହଠାତ୍ ଘୃଣା ଓ
କ୍ରୋଧ ସହ ଦୂରେ ଫିଙ୍ଗି ଦେଇ )
ପୁତ୍ର ! ପୁତ୍ର !—କିଏ ପୁତ୍ର କା'ର ?
କା'ର ପିତା କିଏ ?
ଦୂର ହ—ଦୂର ହ, ସମ୍ମୁଖୁ ମୋହର;
( ଅନୁଚ୍ଚସ୍ୱରେ ) କୁସୁମର ଛଳେ—ଓହୋ, ବଜ୍ର ଯେହ୍ନେ
ହାଣୁଚୁରେ ଶିରେ !

ଧର୍ମ୍ମ— 'ବଜ୍ର' !—ପିତୃଶିରେ ! 'ହାଣୁଚି' ମୁଁ—ପୁତ୍ର ?
ପିତା ! ପିତା ! ଏ' କି ଉକ୍ତି ତବ ?
ବଜ୍ର ଯେହ୍ନେ ସତେ ସତେ
ହାଣିଲି ମୋ ଶିରେ !
ପିତା ! ପିତା !—(କରୁଢ଼ହୋଇ ପଡ଼ିବା)

ବଭ୍ରୁ—( ସସ୍ନେହେ ଉଠାଇ ) ପୁତ୍ର ! ପୁତ୍ର !
ସତେ କିରେ ପୁତ୍ର ତୁହି ମୋ'ର—
ମୁହିଁ ପିତା ତୋ'ର ?

ଧର୍ମ୍ମ— ପିତା ! ପିତା !
(ସାନନ୍ଦେ) ନିଅ ବକ୍ଷେ—ଦିଅ ଚୁମ୍ବ—

ବଭ୍ରୁ— ଦୂର ହ—ଶତ୍ରୁ—ଶତ୍ରୁ ତୁହି—

ଧର୍ମ୍ମା— 'ଶତ୍ରୁ' ! 'ଶତ୍ରୁ' ! ( ଉନ୍ମାଦପ୍ରାୟ ହେବା )

ବଣ୍ଟୁ— ହିଁ ରେ, ଶତ୍ରୁ—ଶତ୍ରୁ—
ଅସିଅଛୁ ଗୁପ୍ତବେଶେ—ବାଳକର ବେଶେ,
ଗୃପିବୁ ସବଳେ ଏହ୍ମ
ଜଳୁଛି ମସ୍ତକ ମୋ'ର ।

ଧର୍ମ୍ମା— ଜଳୁଛ ମସ୍ତକ । ଗୃପିବ ସବଳେ ।
ପିତା । ପିତା । ଜନୁଡ଼ି ଜନୁଡ଼ି ମୁହିଁ ।—
ଓହୋ । ଭ୍ରମୁଛ ମସ୍ତକ କୁମ୍ଭାରର ଚକ ଯେହ୍ନେ;—
ଏହ୍ମ—ଏହ୍ମ—ହେର—ହେର—
ଭ୍ରମୁଛୁ ଦିଗନ୍ତ ସାଗ—ଭ୍ରମୁଛୁ ଜଗତ—
ଅସ୍ଥିର, ଅସ୍ଥିର ମୁହିଁ,
ଅସ୍ଥିର ଚରଣ ମୋ'ର,
ଅସ୍ଥିର ଧରଣୀବକ୍ଷ—
ଧର—ଧର, ପିତା—ପିତା ତୁମ୍ଭେ ମୋ'ର;
ନତୁବା—ପଡ଼ିଲି—
ପଡ଼ିଲି ମୁଁ, ପୁନ ତବ, କାଳ-କର୍ମ୍ମ ମୁଖେ ।
( ପତନୋନ୍ମୁଖ )

ବଣ୍ଟୁ— ପୁନ ।—ପୁନ ମୋ'ର ! ( ଅଲିଙ୍ଗନ କଲେ )

( ନେପଥ୍ୟେ )—ବଣ୍ଟୁ । ବଣ୍ଟୁ । ଏତେବେଳ ଯାଏ—

ବଣ୍ଟୁ— ( ଚମକି ଉଠିବା )

ଧର୍ମ୍ମା— ( ନିର୍ବାକ ଭାବେ ଶୁଣିବାକୁ ଲାଗିଲ )

(ନେପଥ୍ୟେ)—ବଣ୍ଟୁ । ବଣ୍ଟୁ । କ'ଣ କରୁଛୁରେ, ମୂଢ଼ ?
କେଉଁ ମନ୍ତ୍ରେ ମୁଗ୍ଧ ତୁହ୍ମ
ଭୁଲୁଛୁରେ ସତ୍ୟ ?—

ଧର୍ମ୍ମା— 'ସତ୍ୟ' :

(ନେପଥ୍ୟେ)— ସର୍ପଶିଶୁ ଗୋଟା ପୁଣି ଧରୁଛୁରେ କୋଡ଼େ ?
ଧର୍ମ୍ମା— ଏ କି କଥା, ଶିଳ୍ପିଗଣମୁଖେ ?
ବଣୁ— ସର୍ପ-ଶିଶୁ !—ସର୍ପ-ଶିଶୁ ! (ବାଳକକୁ ଛାଡ଼ିଦେଲ)
ଧର୍ମ୍ମା— ପିତା !—ପିତା !—
ବଣୁ— ( ଛୁରିକା ଉଠାଇ ନେଇ ମାରିବାକୁ ଉଦ୍ୟତ )
ଧର୍ମ୍ମା— ଏ' କି ଦେଖେଁ ପିତୃକରେ—ପିତା !—ପିତା ! –
ନା, ନା—( ପିତାର ପାଦପ୍ରାନ୍ତେ ଅଣ୍ଟୁ ମାଡ଼ି ବସି )
ମାର—ମାର, ପିତା !
କର ସତ୍ୟ ରକ୍ଷା—
ହସି, ହସି ଦେବ ଛାର
ପ୍ରାଣ, ତବ କରେ ।
ପଢ଼ିଛୁ ପୁରାଣେ, ଶାସ୍ତ୍ରେ—
ପିତୃ-ସତ୍ୟ—ସତ୍ୟକର ଷଣେ,
ଶ୍ରୀରାମ ଭୁଞ୍ଜିଲେ ସୁଖେ
ବନବାସ କଷ୍ଟ;
ସେହି ପିତୃଅଜ୍ଞା ଧରି ଶିରେ,
ଶ୍ରୀ ପରଶୁରାମ
କାଟିଲେ ଜନନୀ ଶିର
ଅନନ୍ଦ ହୃଦୟେ;
ମୁହିଁ କିବା ଛାର—
ଛାର ଏହି ପ୍ରାଣ ବିନିମୟେ
ଲଭନ୍ତି ସନ୍ତୋଷ,
ସ୍ୱର୍ଗାଦପି ଗରୀୟାନ୍
ପିତା ଯେବେ ମୋ'ର—

ଏଥୁଁ ବଳି କିବା ସୁଖ
ଅଛି ଏହୁ ଭବେ ?
କିନ୍ତୁ ଜାଣି କି ପାରିବି, ପିତା !
କିବା ଦୋଷ ମୋର ?—
ନା, ନା, ନୁହେଁ କର୍ତ୍ତବ୍ୟ ପ୍ରକାର,
ପିତା ପ୍ରତି ଏହିପରି
ପ୍ରଶ୍ନ ବ୍ୟବହାର;—
ଦିଅ ଦଣ୍ଡ, ଦିଅ ପିତା !
ମୁହିଁ ଜଣିତ ସନ୍ତାନ—ଅବାଧ ପିତାର !
(ମୁଣ୍ଡ ନୁଆଁଇଲ)

(ନେପଥ୍ୟେ)—ଶୀଘ୍ର ଶୀଘ୍ର, ବିଶ୍ୱ !

ବିଶ୍ୱ—ନା, ନୁହେଁ ବିଳମ୍ବ ଆଉ ! (ଛୁରିକା ପ୍ରାୟ ବିଦ୍ଧ କରିବ କୁ ଯାଉଥିଲେ)

ଧର୍ମ୍ମ—(ଗୃହିଁ) ସାମାନ୍ୟ ବିଳମ୍ବ, ପିତା !—କ୍ଷମ ଅପରାଧ !—
ମାତା ସଙ୍ଗେ—

ବିଶ୍ୱ—(ଚମକି) ମାତା !—

ଧର୍ମ୍ମ—ହଁ ପିତା ! ମାତା ସଙ୍ଗେ ହେଲେ ଦେଖା
କହିବେ ଏତିକି,
ସାରି ପିତୃ-କାର୍ଯ୍ୟ—ଜାତି-କାର୍ଯ୍ୟ—ଦେଶ-କାର୍ଯ୍ୟ,
ମରିଛି ତା' ପୁତ୍ର—

ବିଶ୍ୱ—(ଧର୍ମକୁ ନିରୀକ୍ଷଣ କରି ନିଜ ମନେ) 'ପୁତ୍ର' !—

ଧର୍ମ୍ମ— ନା—ନା—ଯାଉଅଛି ଦିବ୍ୟଧାମେ ।
ଆଉ ସରିନୁ ମୋ—ର—
(ଭଗ୍ନସ୍ୱର ହୋଇ କାନ୍ଦିପକାଇଲା)

ବିଶ୍ୱ—(ସାବେଗେ ଚିନ୍ତା କରୁ କରୁ) 'ପୁତ୍ର' !—'ମାତା' !

( ପ୍ରକାଶ୍ୟେ )—କିଏ ?—କିଏ 'ମାତା' ତୋ'ର—
କହ, କହରେ ବାଳକ ?
ସତେ, ସତେ କିରେ 'ପୁତ୍ର' ତୁହି ମୋ'ର ?
ନାମ କି 'ଧରମା' ତୋ'ର ?

ଧର୍ମା— ପିତା ! ପିତା !
ଧର୍ମା ନାମେ ପରଚିତ
ଭାଗ୍ୟଧର ମୁହିଁ ।

ବିଶୁ— ତେବେ – ତେବେ
ତୁହ – ତୁହ କି ମୋହର—
( କୁଣ୍ଠିତ ହସ୍ତସ୍ଖଳିତ ହେବା )
ଦେଖେଁ—ଦେଖେଁ – ଅଙ୍ଗୁରି ତୋହର ?
( ବାଳକର ଅଙ୍ଗୁଠି ନେଇ ଦେଖି ) ଏ' ଯେ – ଏ' ଯେ –
ବିବାହ ଅଙ୍ଗୁରି ମୋର !—
ପ୍ରିୟେ ! ପ୍ରିୟେ ! – ପୁତ୍ର ! ପୁତ୍ର !
[ ଆଲିଙ୍ଗନ କରି ଥରେ ପୁତ୍ର ମୁଖ, ଥରେ ଅଙ୍ଗୁରିଟିକୁ
ଘନ ଘନ ଚୁମ୍ବନ କରିବା ]
ବାପ ! ବାପ !—ଏ'କି ବ୍ୟବହାର ତୋ'ର ?
ପିତାସଙ୍ଗେ ଛଳନା କି –

ଧର୍ମା— ପିତା ! ପିତା ! –
କ୍ଷମାକର ଦୋଷ ମୋ'ର –
ଜାଣେ ନା – ଜାଣେ ନା – କି ଭାବ ଆବେଶେ
କରିଥିଲି ପ୍ରତିଜ୍ଞା ଭୀଷଣ
ମନେ. ମନେ ଏହ –
ପିତୃକାର୍ଯ୍ୟ ଆଗେ ମୁହିଁ କରିବି ସମ୍ପନ୍ନ,

ପୁତ୍ର ବୋଲି ପରିଚୟ ଦେବା ପରେ, –
ନତୁବା 'ବଣୁର ପୁତ୍ର' କେହି
ନ ଥିଲା, ବା ନ ଥିବ ଏ ଭବେ ।

**ବଣୁ**—	ଅଟରେ ବଣୁର ପୁତ୍ର
ପ୍ରକୃତରେ ତୁହି । –
ପୁତ୍ର ମୋର – ( ଆଲିଙ୍ଗନ କରିବା ) ମାତ୍ର –
କାହିଁପାଇଁ ନ ଦେଲୁ ପରିଚୟ କହ ? –
ନା, ନା – ଏ' ଯେ ଅପରାଧ ମୋର,
ଦେଲି ଅବସର କାହିଁ ?
ଓଃ ହୋଃ ! – ପୁତ୍ର – ପୁତ୍ର – ଧର୍ମ – ଧର୍ମ –
( ଦୃଢ଼ ଆଲିଙ୍ଗନ କରିବା )

( ନେପଥ୍ୟେ )—ବଣୁ ! ବଣୁ !

**ବଣୁ**—( ସଭୟେ ) ଏଁ—ଏଁ – 'ବଣୁ'—'ବଣୁ' ।

( ନେପଥ୍ୟେ )—ବଣୁ ! ବଣୁ !

**ବଣ**—	ପୁଣି ସେହି 'ବଣୁ'—'ବଣୁ' ! –
'ବଣୁ' ନାହିଁ – 'ବଣୁ' ନାହିଁ –
ଏହି – ଏହି –
ଆସୁଛନ୍ତି ଏଣେ ଧାଇଁ,
କ୍ଷୁଧିତ ଶ୍ୱାପଦ ଦଳ,
ଲକ୍ଷ୍ୟ ଯେହ୍ନେ କରଣି ଶିକାର ।
ପୁତ୍ର ! – ପୁତ୍ର ମୋର ! ( ପୃଷ୍ଠଭାଗେ ଲୁଚାଇବା )
ନା, ନା ଚାଲ ବେଗେ ଏଠୁଁ,
ନୁହେଁ ନିରାପଦ ସ୍ଥାନ –
( ବେଗେ ପ୍ରସ୍ଥାନ ଉଦ୍ୟତ )

ଧର୍ମୀ— କ୍ଷମା, ପିତା !
ଏ ଯେ ଭ୍ରାତୃବର୍ଗ ତବ ?
ବନ୍ଧୁ— ନୁହେଁ ଭ୍ରାତୃବର୍ଗ—ଶତ୍ରୁ ! ଶତ୍ରୁ !
( କାରଗରମାନଙ୍କର ପ୍ରବେଶ )
୧ମ କାର— ଶତ୍ରୁ !—ଶତ୍ରୁ !
ଶତ୍ରୁ, ମିତ୍ର ପର ଏବେ ?—
ବନ୍ଧୁ—( କରଯୋଡ଼ି ) ଭ୍ରାତୃବର୍ଗ ! କ୍ଷମ ଅପରାଧ;
ଜ୍ଞାନଗର୍ବୀ ପିତା ଅଜ,
ଅଜ୍ଞାନ ଅନ୍ଧାରେ
ତୋଳିଥିଲି ଖଡ୍ଗ ସିନା
ସତ୍ୟସ୍ନେହେ—ଅନ୍ଧସ୍ନେହେ—
ନିଜ ପୁତ୍ରସ୍ନେହେ !
ଅହୋ ! ଏ ଯେ ଗୋଟିକ ସନ୍ତାନ ମୋର—
ବଂଶର ଭୂଷଣ !—ନା, ନା—
ଜାତିର ପ୍ରଦୀପ—ଦେଶର ଭାସ୍କର !
ହେର, ହେର, ଭ୍ରାତୃଗଣ !
କିବା ଶ୍ୟାମ କଳେବର,
ଶିଶୁ ନଟବର—
ତ୍ରିଭଙ୍ଗଠାଣିରେ ଉଭା
ସମ୍ମୁଖେ ଅମ୍ବର;—
କିନ୍ତୁ ଅଚିମୁଦ ହେବ ସେହୁ—
ଗିରିଗୋବର୍ଦ୍ଧନଧାରୀ,
ପୂତନା-ବିନାଶୀ, କଂସାସୁର-ଦର୍ପହାରୀ,
ବିରାଟ-ପୁରୁଷ ! ( ତନ୍ମୟ ହୋଇଯିବା )

ଧର୍ମ୍ମ—ପିତା—ପିତା ।

ବିଶୁ—( ସ୍ୱପ୍ନୋତ୍‌ଥିତବତ୍‌) ନେ'ବେ ପଦଧୂଳି—

ଏମାନେ ଯେ ପିତୃବନ୍ଧୁ ତୋର,
ପିତାର ସମାନ ।—( ବାଳକ ଅବନତ ହେଲା )
ଭାଇମାନେ, କର ଅଶୀର୍ବାଦ—
ଦୀର୍ଘଜୀବୀ ହେଉ ବତ୍ସ ।

[ କାରିଗରମାନେ ବିଶୁର ଭାବରେ ମଜ୍ଜିଯାଇ ଅଶୀର୍ବାଦ କରିବାକୁ ଯାଉଥିଲେ ]

ଜନୈକ କାରି—( ପ୍ରବେଶକରି ) କ'ଣ କରୁଛ, ଭାଇମାନେ ?

ତୁମେମାନେ ବି ଭୁଲିଗଲ ନା କ'ଣ ?

ସମସ୍ତେ—ଠିକ୍ କହୁଚ, ଭାଇ । ଠିକ୍ କହୁଚ, ଭାଇ ।—ବିଶୁ,

ତୁ କଣ ଆମକୁ ବି ହୁଣ୍ଡା କରି ପାଇଲୁ ?

ବିଶୁ—  ଭାଇମାନେ !—ଏହି ଶିଶୁ ରହିଅଛି ଟେକି ସିନା,

ଦେଶର ମର୍ଯ୍ୟାଦା—ଜାତିର ମର୍ଯ୍ୟାଦା—
ଶିଳ୍ପିର ମର୍ଯ୍ୟାଦା—ତୁମ୍ଭର ମର୍ଯ୍ୟାଦା,
କ୍ଷୁଦ୍ର ବୁଦ୍ଧି ବଳେ ତାର ।

( ସମସ୍ତଙ୍କର ଉତ୍ତେଜନାଭାବ ପ୍ରଶମିତ ନ ହେବାର ଦେଖି )

ବିଶୁ—  ଭାଇମାନେ, ନୁହଁ ଅନମନ—

ଏ'କି ନୁହେଁ ସନ୍ତାନ ତୁମ୍ଭର ?

୧ମ କାରି—ବିଶୁ ।

ତୁହି ନା ଅଗ୍ରଣୀ ଏହି କାର୍ଯ୍ୟେ ?
ତୁହି ନା ଗୋପନେ, ଜଣେ ଜଣେ
ଦେଇଥିଲୁ ପରାମର୍ଶ,
କରିବାକୁ ନାଶ

ବଦ୍ଧ ଗୋଷ୍ଠୀ ଏହୁ—ଜଣ୍ଡକ ଅମ୍ବର,
ମର୍ଯ୍ୟାଦା ପଥରେ—ବନ୍ଧାଣୀକୁଳରେ ?
କ୍ରୂରକାର୍ଯ୍ୟେ ଏହୁ, ପୁଣି
ବ୍ରତୀ ନ ହୁଅନ୍ତେ କେହୁ,
ନିଜହସ୍ତେ ନେଲ୍ ଭାର
କରିବାକୁ ନାଶ;—
ଏବେ ଏ' କି ବ୍ୟବହାର,
ଜାଣି ନିଜ ପୁଅ ?

ବଶୁ— ଭାଇ ! ଭାଇ ! ନିଜଗୁଣେ
କର କ୍ଷମା ଦୁର୍ବଳତା ମୋର—
( ଜାନୁପାତ ପୂର୍ବକ କରଯୋଡ଼ି ବସିବା )

୨ୟ ଭାଇ—( ଉଚ୍ଚହାସ୍ୟ କରି) ଦୁର୍ବଳତା ? କ୍ଷମା ?
ଏ' ଦୁର୍ବଳତାର କ୍ଷମା
ଅଛି କି ଏ' ଭବେ ?
ଅରେ ରେ, ପାମର !
ଅଜି ଯଦି ଏ' ବାଳକ
ନ ହୋଇ ତୋହର ପୁଅ,
ହୋଇଥାନ୍ତା ମୋ'ର—
ଛାଡ଼ି ଦିଅନ୍ତୁ କି ଭଲେ ?
ତୋଟି ଚିପି କରେ—
ଛୁରୀ ଅବା ବନ୍ଧ ବକ୍ଷେ –
କାଳାର୍ଣ୍ଣବେ ଫିଙ୍ଗି ଅବା
କୁମ୍ଭୀରର ଗ୍ରାସେ,
ମାରି ଥା'ନ୍ତୁ ତ ନିଷ୍ଟୟ ?

କାଳଥାନ୍ତୁ ପିତୃହୃଦେ ଯେଉଁ
ଯାତନାର ବହ୍ନି—
ଜ୍ୱାଳା ତା'ର ମର୍ମେ ମର୍ମେ
ବୁଝୁଚୁ କି ଏବେ ?

ସମସ୍ତେ—ଠିକ୍ ଠିକ୍ କହୁଚୁ ରେ ଭାଇ ।

୧ମ କାର—ଅଛୁର ମନେ କି ପଡ଼େ, ବନ୍ଧୁ ।
ସେହୁ ଉତ୍ତେଜନା—ଉଦ୍ଦୀପନା ତୋ'ର,
ଘଡ଼ିକର ଆଗେ—
"ରାଜା ଜାଣିଲେ ବାରତା—
ସାମାନ୍ୟ ଗୋଟାଏ ଶିଶୁ,
ଅଜଣା ଅଶୁଣା—
କରନ୍ତୁ ସମ୍ପନ୍ନ କାର୍ଯ୍ୟ,
ଦୁଃସାଧ୍ୟ ଅତୀବ ବାରଶତ ପକ୍ଷେ—
ପ୍ରାଣଦଣ୍ଡ ଅବ୍ୟାହତ ଦେବେ କି ଆମ୍ଭଙ୍କୁ ?"

ବନ୍ଧୁ—( ବିକଳସ୍ୱର ) ଭାଇ । ଭାଇ ।

୧ମ କାର—ଗୁଡ଼ ସବୁକଥା—କହ, ବନ୍ଧ ଖୋଲି,
ଜାଣିଯାଉଁ ସର୍ବେ—
"ବାରଶହ ବଢ଼େଇରେ ଦାୟୀ—
କି ପୁଅରେ ଦାୟୀ" ତୋ'ର ?

ଧର୍ମ—"ବାରଶ'ରେ ଦାୟୀ" ନିଷ୍ଠେ, ପିତୃବ୍ୟ ସକଳ ।

ବନ୍ଧୁ—( ବିକଳସ୍ୱରେ ) ବାବା । ( ଆଲିଙ୍ଗନ କରିବା )

୧ମ କାର—ବନ୍ଧୁ । ସମ୍ମତ ଶିଶୁର ବାକ୍ୟେ
ଅଛୁ କି ତୋହର ?
( କ'ଣ କହିବାକୁ ଯାଉଥିଲି )

ଧର୍ମ୍ମ— ନ କର ସନ୍ଦେହ ଲେଶ—
ଦେଖିଯାଅ ସ୍ୱଚକ୍ଷେ ସବ୍ବେ—
ପିତୃବାକ୍ୟ—ପିତୃସତ୍ୟ
କାର୍ଯ୍ୟେ ପରିଣତ ଅକ୍ଷରେ, ଅକ୍ଷରେ ।
ବନ୍ଧୁ— ନା, ନା, ବାପ—ନ କହ ଏସନ –
ନ ଛାଡ଼ିବୁ କ୍ଷଣେ –
ରଖିବୁ ଘୋଡ଼ାଇ ତୋତେ ଅଞ୍ଚଳର ମଧ୍ୟ,
ସହିବୁ ଯାତନା ଯେତେ,
ଅସ୍ତ୍ରରେ ଅଶେଷ ।
ଧର୍ମ୍ମ— ପିତା ! –
ଏ' କି ଯୋଗ୍ୟ ବାକ୍ୟ ତବ ?
ବନ୍ଧୁ– ଯୋଗ୍ୟାଯୋଗ୍ୟ ନ ବୁଝଇ କିଛି,
ବୁଝିଅଛି ସାର ମାତ୍ର –
'ପୁତ୍ର' ! – 'ପୁତ୍ର' ! – 'ପୁତ୍ର' !
୧ମ କାର – କ'ଣ କହୁଛରେ, ଟୋକା ? – ଅଜ୍ ଆମେ
ଠିଆହୋଇ ପାରବୁ ନାହିଁ –
ବନ୍ଧୁ – ଦୂର ହ', ରାକ୍ଷସର ଦଳ ! –
ସମସ୍ତେ —( ସକୋଧେ ) କି ?—
ଧର୍ମ୍ମ – କ୍ଷମାକର, ପିତୃବ୍ୟସକଳ !
ଉନ୍ମାଦ ଜନକ ମୋର
କ୍ଷଣକାଳ ପାଇଁ ।
ପିତା ! ଜ୍ଞାନୀ ତୁମ୍ଭେ,
ଅବେଗେ ବାତୁଳ ନ ହଅ ଭସାଇ ।
ସନ୍ତାନର ସୁଖ

କାମନା ପିତାର ଯେବେ,
କେଉଁ ସୁଖ ଏଥୁଁ ବଳି
ଭୁଞ୍ଜିପାରେ ପୁଣ ?—
ଅସିଅଛୁ ଅନ୍ଧକାରେ ମୁହିଁ,
ଯିବି ଚାଲି ଅନ୍ଧକାରେ,
ଅନ୍ଧକାର କର ଚିରସଙ୍ଗୀ ମୋର ।—
କହ, ପିତା—କିବା ଭାଗ୍ୟ, ଯେବେ
ଅନ୍ଧକାରେ ସେହୁ—
ଘୋର ଅନ୍ଧାରେ, ଅନ୍ଧାରେ,
ଅନ୍ଧାର ପିଚ୍ଛିଳ ପଥେ
ଛୁଟି ଧୀରେ, ଧୀରେ,
ତୋଳିପାରେ ମହାଦୀପ
ଅନ୍ଧକାର ଶିରେ—
ଜାଳିପାରେ ଶିଖା ଦିବ୍ୟ
ଅନ୍ଧକାର ବକ୍ଷେ—
କରିପାରେ ସମୁଜ୍ଜ୍ୱଳ
ଜ୍ଞାନର ମନ୍ଦର,
ନା, ନା—ପିତୃକୁଳ ଆଜି
ଶିଳ୍ପିକୁଳ ମୋ'ର ?
କହ, କହ ପିତା ! ପୁଣି
କିବା ଭାଗ୍ୟ, ଯେବେ
ମଧ୍ୟାହ୍ନ ଭାସ୍କର ତେଜେ
କରିପାରେ ଦୂର,
ଦେଶର ଅନ୍ଧାର—ବିଶ୍ୱର ଅନ୍ଧାର ତଥା,
ଅନନ୍ତ ଅମର ?

ବନ୍ଧୁ— 'ଅନନ୍ତ ଅମର' ତୃଷ୍ଣ ଅଛୁ ମୋ'ର ।
ତୃଷ୍ଣ ମୋର ଶର ଜ୍ୟୋତ,
ଅନ୍ଧକାର ବକ୍ଷେ ।
ଧର୍ମ୍ମା— କପାଁ ତେବେ ବାଧା ଅଜ ?
ବନ୍ଧୁ— ନ ଦେବାରେ ତଳେ ।
ଗୁଲ୍‌ରେ ଲୁହରତେ
ଅନନ୍ତର ପଥେ ସେହ୍ର—
ଅନନ୍ତର ଯାତ୍ରୀ ଅମ୍ଭେ,
ଅନନ୍ତ ଅମର ଅଟେ ସମ୍ବନ୍ଧ ଅମ୍ଭର ।
ଧର୍ମ୍ମା— ପିତା ! ପିତା !
ଏ'କ ଅମ୍ଭନାଶୀ କଥା ତବ ?
ଦୁର୍ବଳ ଅଜ୍ଞାନ ଏଡ଼େ
ନୁହେଁ ପିତା ମମ—
ସାମାନ୍ୟ ପାର୍ଥିବ ଲୋଭେ
ଭୁଲ୍ ଯିବ ପ୍ରତିଜ୍ଞା ନିଜର—
ସ୍ୱଜାତ ସ୍ୱଧର୍ମେ,
ଦେବ ବିସର୍ଜନ ଶତ୍ରୁର କବଳେ ।
ବନ୍ଧୁ— ବାବା ! ବାବା !
ଧର୍ମ୍ମା— ନା, ନା ପିତା—
ମମତା-ରାକ୍ଷସୀ ମୋତେ—ନ ଭୁଲ କାମୁଡେ;
କଣ୍ଟକ ସେ କର୍ତ୍ତବ୍ୟର ପଥେ,
ଧର୍ମ୍ମପଥେ ମହାବିଘ୍ନ ଗୋଟା;—
ସଂହାର—ସଂହାର—
ନାହିଁଟି ନିସ୍ତାର ।

[ ନେପଥ୍ୟେ ଗୀତ ଶ୍ରୁତ ହେବ। ]

ଗୀତ

"ଗିରିଶୃଙ୍ଗ କାଟି କର ସମତଳ,
ସାଗର ଶୁଖାଇ ଦେଖ ରସାତଳ —
ଧର୍ଵ ଛେଦ—ଅଭ୍ର ଭେଦ—ତୋଳ ସ୍ତମ୍ଭ ବରେଣ୍ୟ ॥"
ମହାଗୀତ—ମହାଗୀତ—
ଜାଗ୍ରତ ସାଦ୍ଧାରେ !—
ମହାଜ୍ୟୋତ—ମହାଜ୍ୟୋତ—
ଅନ୍ତରେ ବାହାରେ !—
ଏହ—ଏହ—
ବିଜୟୀ ଙ୍କେ ଯେ ମୋ'ର—
ହୁଲହୁଲ ଘନ କରତାଳ
ଅସେ ତାଳେ, ତାଳେ ନାଚ
ଊର୍ମିର କଲ୍ଲୋଳେ, —
ନାଚେ ଦିଗଙ୍ଗନା, ନାଚେ ବିଶ୍ୱସାରି
ମହୋଲ୍ଲାସେ କିବା —
ଉଚ୍ଛୁଳି ପଡ଼ଇ ମହୀ,
ଶୂନ୍ୟ, ମହାଶୂନ୍ୟ —
'ଜୟ ଜୟ' ଗାନେ ।
ଗାଅ ଅବିରାମ,
ଢଳେ ଜତାର ରସନା —
ହୃଦୟ କନ୍ଦର ଭରି
ଉଠୁ ସେହ ତାନ —
'ଜୟ ପିତା, ଜୟ ମାତା,'

ଜୟ ଚରାଚର ବିଶ୍ୱବାସୀଗଣ—
ଜୟ— ଜୟ— ଜୟ—
'ଜୟ ଜଗଦୀଶ ହରେ'

( ସମୁଦ୍ରବକ୍ଷକୁ ଡେଇଁ ପଡ଼ିବା )

[ ସମସ୍ତେ ନିର୍ବାକ୍ ଓ ନିସ୍ପନ୍ଦହୋଇ କିଛିକ୍ଷଣ ରହିଁ ରହିବା ]

ବିଶୁ— ବାବା ! ବାବା !—

( ସାଗରରେ ପତନୋନ୍ମୁଖ ହେବା )

ସମସ୍ତେ— ଅସମ୍ଭବ— ଅସମ୍ଭବ, ବିଶୁ !
ସ୍ମର ତୋ'ର ପ୍ରତିଜ୍ଞାର କଥା !
[ ବିଶୁକୁ ଧାରଣ କରିବା ଓ ସେ ମୂର୍ଚ୍ଛା ଯାଇଥିବା ]

---

# ତୃତୀୟ ଅଙ୍କ

**ପ୍ରଥମ ଦୃଶ୍ୟ—**

[ ମନ୍ଦର ସମ୍ମୁଖସ୍ଥ ବେଳାଭୂମି ଚନ୍ଦ୍ରାତପ ମଣ୍ଡିତ—ରାଜସଭାର ଉପଯୋଗୀ ଆସନମାନ ଯଥା ସ୍ଥାନରେ ସ୍ଥାପିତ—ମନ୍ଦରର ତୋରଣଦେଶ ପର୍ଯ୍ୟନ୍ତ ପଥଟି ପତାକାଦିରେ ସୁସଜ୍ଜିତ । ଏକ କୋଣରେ ବିଚିତ୍ର ବସନପରିହିତ କେତେଗୁଡ଼ିଏ ଶିଳ୍ପୀ ଠିଆ ହୋଇଥିଲେ; ତନ୍ମଧ୍ୟରେ ବିଶ୍ୱ ସୁସଜ୍ଜିତ ହୋଇ ସୁନ୍ଦା କପର ଶ୍ରୀହୀନ ଓ ଅଦ୍ଭୁତ- ଦେଖା ଯାଉ-ଥିଲା—ସର୍ବଦା ଅନ୍ୟମନସ୍କ ଯେମନ୍ତ କି ଅସ୍ୱାସ୍ଥିନ. ଶରୀରଟି କେବଳ ଠିଆ ହୋଇଛି ]

( ଶିବେଇର ପ୍ରବେଶ )

ଶିବେଇ—ତୁମ୍ଭେମାନେ ସଜବାଜ ହୋଇ ସାରିଲ ତ ?

୧ମ କାର—ହଁ—

ଶିବେଇ—( ବଣୁ କାନ୍ଧରେ ହାତ ଦେଇ ) ବଣୁ ! ତୋତେ ଏଇଠି ଠିଆ ହେବାକୁ ପଡ଼ିବ ।

ବଣୁ—ହୁଁ ।

ଶିବେଇ—ମଣିମା ସଭାମଣ୍ଡପକୁ ବିଜେ କରିବା ମାତ୍ରକେ—

ବଣୁ—ହୁଁ ।

ଶିବେଇ—କିଛି ନ ଶୁଣି, 'ହୁଁ' ?

ବଣୁ—ହୁଁ ।

ଶିବେଇ—ଏହିପରି ଭାବେ ଅଭିବାଦନ କରିବାକୁ ହେବ ।

( ବତାଇ ଦେବା )

ବଣୁ—ହୁଁ ।

ଶିବେଇ—କିପରି, କହ ?

ବଣୁ—ହୁଁ ।

ଶିବେଇ—ଠିଆ ହୋଇ ରହିଲୁ ଯେ ?

ବଣୁ—ହୁଁ ।

ଶିବେଇ—ବଣୁ ! ବଣୁ ! ( ଜୋରରେ ହଲାଇବା )

ବଣୁ—ଏଁ—ଏଁ—( ଗାଢ଼ନିଦ୍ରାବ୍ୟାଘାତରେ ଯେପରି କହିଥାନ୍ତି )

ଶିବେଇ—ବଣୁ ! ଚାହିଁଲୁ ଏଣେ—( ହଲାଇବା )

ବଣୁ—( କିପରି ଏକ ଅର୍ଥଶୂନ୍ୟ ଦୃଷ୍ଟିରେ ଚାହିଁ, ପରେ କାହାକୁ ଖୋଜିବା )

ଶିବେଇ—କାହାକୁ ଖୋଜୁଛୁ, ବଣୁ ?

ବଣୁ—ଏଇଠି—ଏଇଠି ଥିଲା—

( ସେହି ମନ୍ଦିର ଚୂଡ଼ାକୁ ଇଙ୍ଗିତ କରି ଚାହିଁ ରହିବା )

ଶିବେଇ—ପୁଣି ପାଗଳାମି, ବଣ୍ଡୁ ?

ବଣ୍ଡୁ—( ଅଟ୍ଟହାସ୍ୟ କରିବା ) ହାଃ—ହାଃ—ହାଃ—

ଶିବେଇ—ବଣ୍ଡୁ । ବଣ୍ଡୁ ।

ବଣ୍ଡୁ— ହଁ, ହଁ—ମୁଁ ବଣ୍ଡୁ—ଧରମାର ପିତା ।
କହନାହିଁ ପୁଅ ମୋର ?
"ଦୁର୍ବଳ ଅଜ୍ଞାନ ଏତେ
ନୁହେଁ ପିତା ମମ—
ସାମାନ୍ୟ ପାର୍ଥିବ ଲୋଭେ
ଭୁଲିଯିବ ପ୍ରତିଜ୍ଞା ନିଜର ।"
ହାଃ—ହାଃ—ହାଃ—

ଶିବେଇ—ପୁଣି ତ ସେହି ପାଗଳାମି ।

ବଣ୍ଡୁ— ହାଃ—ହାଃ—ହାଃ—
କହି ନାହିଁ ଧର୍ମା ମୋ'ର ?
ପାଳି ନାହିଁ ଅକ୍ଷରେ ଅକ୍ଷରେ ?
"ଅବେଗେ ବଗୁର ନ ଦଅ ଭସାଇ ।"—
ହାଃ—ହାଃ—ହାଃ—

୧ମ ଭାର—ଭାଇ । ଭାଇ । ଅଳଦନଟା ଭଲ ସମାଳ ଯା ।

ବଣ୍ଡୁ—( କାତରଭାବେ ) କାହିଁକି ? କାହିଁକି ?— ତା'ପରେ କ'ଣ ହେବ ? ତା'ପରେ କ'ଣ—

ଶିବେଇ—ସର୍ବନାଶ—

ବଣ୍ଡୁ—ସର୍ବନାଶ । ସତେ, ସତେ ସର୍ବନାଶ କରିଗଲା, ସା'ନ୍ତେ—ନା, ନା "ଅନନ୍ତ ଅମର ମୁହିଁ—
ଅନନ୍ତ ଅମର ସମ୍ବନ୍ଧ ଆମର"—ହାଃ—ହାଃ—ହାଃ

୧ମ ଭାଟ — ବଣ୍ଟୁ ! ଏହି ଫଳ ତୋ'ର ପ୍ରତିଜ୍ଞା-ପାଳନ ?—ଗୋଟାଏ
ଶିଶୁର ସାହସ ବ —
ବଣ୍ଟୁ— ନାହିଁ ମୋହଠାରେ ?—
ଶିଶୁର ଜନକ ମୁହିଁ—
ଶିଶୁର କୋମଳ ଅଙ୍ଗ
ସ୍ୱହସ୍ତେ ଛେଦଣ —
କରି ଖଣ୍ଡ ଖଣ୍ଡ, ରାନ୍ଧିଅଛି ବହୁ ଯତ୍ନେ—
ଦେଇଅଛି ଭୁଞ୍ଜିବାକୁ
କ୍ଷୁଧାତୁର ଗଣେ;—
କରିଅଛି ନିଜ କ୍ଷୁଧା ନାଶ
ସେହି ରକ୍ତ ମାଂସେ—
ଶିଶୁର ମୋହର ।
ହାଃ — ହାଃ—ହାଃ—
ନାହିଁ ଏତିକା ସାହସ,
ଅତିଥିର ମନସ୍ତୁଷ୍ଟି ହେତୁ
କରିବି ନର୍ତ୍ତନ — ଗାଇ ପଦେ ଅଧେ ଅବା ?
ସମସ୍ତେ—ବଣ୍ଟୁ ! ବଣ୍ଟୁ ! ( ନେପଥ୍ୟେ ବାଦ୍ୟଧ୍ୱନି )
ଶିବେଇ — ଏହି ଯେ ମଣିମା ବିଜେକଲେଣି — ଚୁପ୍ — ଚୁପ୍—
ବଣ୍ଟୁ — ମୁଁ ହୋଇ ପାରିବି ନାହିଁ, ସା'ନ୍ତେ ।
ଏ' ଯେ 'ବିଜୟ ବାଜଣା'—
'ଶଙ୍ଖ ହୁଳହୁଳି' — 'ଘନ କରତାଳି',
ନେବ ବୋଲି ବଣ୍ଟୁ ପୁରସ୍କାର ଆଜି
ତୁମ୍ଭଙ୍କ ଶ୍ରୀକରୁ,
ତା'ର ମହତ କାର୍ଯ୍ୟର—

ଅଦ୍ଭୁତ—ଅଦ୍ଭୁତ ଭବେ !

ହାଃ—ହାଃ—ହାଃ—

ସା'ନ୍ତେ ! ସା'ନ୍ତେ !—ମୁଁ କ'ଣ ମୂର୍ତ୍ତି ମାର ନାହିଁ ?

ଖିବେଇ—ନିଷ୍ଟୟ –

ବଣ୍ଟୁ—ତେବେ ଦେଖିଲ, ଦେଖିଲ – କେମିତି ସେଥ ଦେଉଳ ଚୂଡ଼ାରେ ବସି ମୋତେ ଖତେଇ ହେଉଚ—

ଖିବେଇ—କିଏ ? କିଏ ? କାହିଁ ?—ଛୁ, ବଣ୍ଟୁ ! ତୁ ତେଣେ ଅଭ୍ ଗୃହିଁନା—

ବଣ୍ଟୁ—ଠିକ୍ କହୁଚ, ସା'ନ୍ତେ—ଏଣିକି ମୋ' ଛଡ଼ା ମୁଁ ଅଭ କାହାରକି ଗୃହିଁବି ନାହିଁ । ( ନିଜକୁ ପର୍ଯ୍ୟବେକ୍ଷଣ କରୁ କରୁ ) ଏଁ—ଏଁ—ମୋତେ ଭଲକର ସଜାଇ ଦେଇ-ନାହାଁନ୍ତି କାହିଁକି ?—ମୁଁ ଯେ ମଣିମାଙ୍କ ଶ୍ରୀକରୁ ପୁରସ୍କାର ନେବି—

ଖିବେଇ—ବେଶ୍ ତ ସାଜିଚୁ –

ବଣ୍ଟୁ—ସତେ ? ସତେ ?

ଖିବେଇ—ଖାଲି ମଣିମାଙ୍କ ସଙ୍ଗେ କଥାବାର୍ତ୍ତା ବେଳେ ଭଲକର ସଜାଇ କହି ପାରିଲେ ହେଲା ।

ବଣ୍ଟୁ—ସେଇଥି ପାଇଁତ କହୁଚି—ଭିତରଟା ମୁଁ ଖୁବ୍ ଭଲକର ସଜାଇ ରଖିଚି – ବାହାରଟା ଖାଲି ଭଲକର ସଜାଇ ଦେଲେ, ବାହାର ଭିତର ଯୋଡ଼ସନ୍ଧ ପରା ଠିକ୍ ମିଶିଯିବ !

ଖିବେଇ – ଏତେବେଳକେ ବଣ୍ଟୁର କଥାପର ଗୋଟାଏ କଥା ଶୁଣାଗଲା ।

ବଣ୍ଟୁ – 'ବଣ୍ଟୁର ନୁହେଁ – 'ବଣ୍ଟୁର ନୁହେଁ, ସା'ନ୍ତେ – ଏ ଧର୍ମ୍ମା-

ବାପର ।

ଶିବେଇ—ଦେଖ୍, ତା' କଥା ଆଜ ଥରକୁ ଥର ମନରେ ପକାନା ।

ବଣୁ—ସା'ନ୍ତେ ! ସା'ନ୍ତେ ! ସେ କଥା କୁହ ନାହିଁ—ତା' ହେଲେ ମୁଣ୍ଡି ପୁଣି ଭାଙ୍ଗି ପଡ଼ିବଟି—

ଶିବେଇ—ବଣୁ ! ତୋ' ହାତ ଧରୁଚ—

ବଣୁ—ନା, ନା— ମୁହିଁ ଗଢ଼ିଚ—ବଣୁ ଗଢ଼ିଚ— ବଣୁର କାରଗର— ବଣୁର ଜ୍ଞାନରେ ମୁଣ୍ଡି ମରଚ ।

ଶିବେଇ—ହଁ, ସେହି କଥା—( ନେପଥ୍ୟେ ବାଦ୍ୟଧ୍ୱନି ) ଏହି ଯେ, ବାଦ୍ୟଧ୍ୱନି ଅତି ନିକଟରେ ।

ବଣୁ—ହାଃ—ହାଃ—ହାଃ—ମୋ'ର ବିଜୟ ଦୁନ୍ଦୁଭି—ବଣୁର ବିଜୟଧ୍ୱନି । ( ନାଚଉଠିବା )

ଶିବେଇ—ବଣୁ !

ବଣୁ—ବାଃ—ମୋ'ର ବିଜୟଧ୍ୱନିରେ ମୁଁ ନାଚିବି ନାହିଁ, ସା'ନ୍ତେ ?

ଶିବେଇ—ମୁଁ' ତ ପୁରସ୍କାର ପାଇବି—କାହିଁ—

ବଣୁ—ଠିକ୍ ଠିକ୍, ଏ' ପୁରସ୍କାରରେ କାନ୍ଦିବାକୁ ହୁଏ ପରା ! ଊଁ— ଊଁ— ( କାନ୍ଦିବା ) ( ନେପଥ୍ୟେ ବାଦ୍ୟଧ୍ୱନି )

ଶିବେଇ—ଏହି ଯେ ବାଦ୍ୟଧ୍ୱନି ଅତି ନିକଟରେ ।—ଦେଖ୍ ତୋତେ କିଛି କରିବାକୁ ହେବ ନାହିଁ—ଆମେ ଯେଉଁପରି କରିବୁ, ତୁ ଠିକ୍ ସେହିପରି କରିବୁ ।

ବଣୁ—ଠିକ୍ ସେହିପରି କରିବି, ସା'ନ୍ତେ ।—ଧର୍ମ୍ମ ଯେ ମୋତେ ଠିକ୍ ସେହିପରି କରିବାକୁ କହୁଚ ।—ସା'ନ୍ତେ । ସା'ନ୍ତେ । ଦେଖିଲ, ଦେଖିଲ, କେଡ଼େ ଚଗଲା ଟୋକା ସେ— ଆପେ ଭେଟିବା ବାହାନା କରି, ମୋତେ ଟାଣିଆଣି ଦରିଆ ଭିତରକୁ ପେଲିଦେଇ, ନିଜେ ଶୁଖିଲରେ ତୁଳସୀ

ଗଛଟି ପରି ଠିଆ ହୋଇଛ—ଅହା ! ସତେ ଯେମିତିକା କିଛି ଜାଣେ ନାହିଁ ! ଦେଖିଲ, ଦେଖିଲ, ପୁଣି ଯେତିକି ମୁଁ କଲବଲ ହେଉଛ—ସେତିକି ସେ ଠୋ, ଠୋ କରି ହସୁଛ—

ଶିବେଇ—ପୁଣି ପାଗଳାମି ?

ବିଶ୍ଵ—ପାଗଳାମି ! ପାଗଳାମି !—ମୁଁ ପାଗଳାମି କରୁଛ ?—ମୁଁ ବିଶ୍ଵ—ଧର୍ମ୍ମାର ବାପ ? ସା'ନ୍ତେ ! କୁହ, କୁହ—କ'ଣ କଲେ ପାଗଳାମି ହେବ ନାହିଁ ?

ଶିବେଇ—ମୁଁ ଯେମିତିକା କହିବି, କରିବି—ତୁ ଠିକ୍ ସେମିତିକା କହିବୁ, କରିବୁ—

( ନେପଥ୍ୟେ ପୁଣି ବାଦ୍ୟଧ୍ଵନି )

ଏହି ଯେ ମଣିମା ବିଜେ କରୁଛନ୍ତି ।

ବିଶ୍ଵ—'ଏହି ଯେ ମଣିମା ବିଜେ କରୁଛନ୍ତି' ।

ଶିବେଇ—( ଶ୍ରେଣୀବଦ୍ଧ କରି ଠିଆ କରାଇ କରାଇ ) ବିଶ୍ଵ ! ତୁ ପ୍ରଥମ—

ବିଶ୍ଵ—( ତଦ୍ରୂପ କରୁ କରୁ ) 'ବିଶ୍ଵ, ତୁ ପ୍ରଥମ' ।

ଶିବେଇ—ଶାମ, ତୁ ଦ୍ଵିତୀୟ । ( ବିଶ୍ଵପାର୍ଶ୍ଵରେ ଠିଆ କରାଇବା )

ବିଶ୍ଵ—( ତଥାନୁକରଣ ) 'ଶାମ ତୁ ଦ୍ଵିତୀୟ' ।

ଶିବେଇ—ବିଶ୍ଵ !

ବିଶ୍ଵ—'ବିଶ୍ଵ !'

ଶିବେଇ—କ'ଣ କରୁଚୁ ତୁହି ?

ବିଶ୍ଵ—'କ'ଣ କରୁଚୁ ତୁହି ?'

ଶିବେଇ—ନା, ନା, ତୋତେ କିଛି କରିବାକୁ ହେବ ନାହିଁ ।

ବିଶ୍ଵ—'ନା, ନା, ତୋତେ କିଛି କରିବାକୁ ହେବ ନାହିଁ ।'

[ ବାଦ୍ୟଧ୍ୱନି ନିକଟବର୍ତ୍ତୀ ହେବା ଓ ଜନୈକ ରାଜକର୍ମଚାରୀଙ୍କ ପ୍ରବେଶ ]

ରାଜକର୍ମଚାରୀ—ମହାରାଣୀ ଓ ମଣିମା ବିଜେ କରୁଛନ୍ତି— ତୁମେମାନେ ବର୍ତ୍ତମାନ ଏଠାରୁ ଚାଲିଯାଅ ।

ଶିବେଇ—ଚାଲିଆସ, ସମସ୍ତେ ।

ବିଶୁ—'ଚାଲିଆସ, ସମସ୍ତେ !'

ଶିବେଇ—ବିଶୁ ! ବିଶୁ !

ବିଶୁ—'ବିଶୁ ! ବିଶୁ !' ( ଶିବେଇ ବିଶୁକୁ, ବିଶୁ ମଧ୍ୟ ସେହିପରି ଶିବେଇକୁ ଧାରଣ କରି ପ୍ରସ୍ଥାନ । ଶିଳ୍ପିଗଣ ପରସ୍ପରକୁ ନିରାଶା-ସୂଚକ ଇଙ୍ଗିତ କରୁ କରୁ ପ୍ରସ୍ଥାନ )

[ ବାଦ୍ୟକମେ ମାହାରୀଗଣ ସହ ମହାରାଣୀ ବିଜେ କରି ମନ୍ଦିର ମଧ୍ୟରେ ପ୍ରବେଶ କଲେ । ତତ୍ପରେ ସଭାସଦ୍‌ଗଣ ଓ ପୁରୋହିତ ସହ ମହାରାଜାଙ୍କ ପ୍ରବେଶ । କେବଳ ପୁରୋହିତ ଓ ମହାରାଜା ମନ୍ଦିର ମଧ୍ୟରେ ପ୍ରବେଶ କଲେ—ସଭାସଦ୍‌ଗଣ ଯେ ଯାହାର ପଦାନୁଯାୟୀ ଆସନ ଗ୍ରହଣ କଲେ—ମନ୍ତ୍ରୀ ମଣ୍ଡପ ଉପରେ ଠିଆ ହେଲେ । ]

ମନ୍ତ୍ରୀ—ସଭାସଦ୍‌ଗଣ ! ଆଜି ଭାରି ଆନନ୍ଦର ଦିନ ! ଆମ୍ଭମାନଙ୍କର ଉଦ୍ଦେଶ୍ୟ ଏତେକାଳ ପରେ କାର୍ଯ୍ୟରେ ପରିଣତ ହୋଇଛି । ଏ' ଯେଉଁ ମହାକୀର୍ତ୍ତି ସମ୍ମୁଖରେ ମୂର୍ତ୍ତିହେବାକୁ ଦେଖୁଛନ୍ତି, ତାହା କେବଳ କାରୁକାର୍ଯ୍ୟ ନିମନ୍ତେ ଯେ ଜଗତ୍ ବିଖ୍ୟାତ ହେବ, ତାହା ନୁହେଁ—କିମ୍ବା ଦେବତାଙ୍କ ମନ୍ଦିର ବୋଲି ଯେ କ୍ଷେତ୍ର ଓ ଧର୍ମର କେବଳ ମାହାତ୍ମ୍ୟ ବଢ଼ାଇବ, ତାହା ନୁହେଁ—ସଙ୍ଗେ ସଙ୍ଗେ ରାଜନୈତିକ ହିସାବରେ ଦେଶର ଗୋଟିଏ ମହା ହିତ ସାଧନ

କରିବ—ବହିରାକ୍ରମଣରୁ ଦେଶକୁ ରକ୍ଷା କରିବା ନିମନ୍ତେ ଗୋଟିଏ ପ୍ରଧାନ ଦୁର୍ଗ ହୋଇ ରହିବ ।

ସଭାସଦ୍—କିପରି ? କିପରି ?

ମନ୍ତ୍ରୀ—ମହାରାଜାଙ୍କ କୌଶଳରେ ଉକ୍ତ ମନ୍ଦିର ମଧ୍ୟରେ ଏପରି ଶକ୍ତିଶାଳୀ ଚୁମ୍ବକ-ପ୍ରସ୍ତର ସଂରକ୍ଷିତ ହୋଇଅଛି, ଯାହାର ଆକର୍ଷଣରେ ବହୁ ଦୂରବର୍ତ୍ତୀ ଯେ କୌଣସି ଅର୍ଣ୍ଣବପୋତ, ଯେତେ ବୃହତ୍ ହେଉ ନା କାହିଁକି, ଏକାବେଳକେ ଛିନ୍ନ ଭିନ୍ନ ହୋଇ ଖଣ୍ଡ ଖଣ୍ଡ ପଂଶାଚନରେ ପରିଣତ ହୋଇଯିବ ।

ସଭାସଦ୍‌ଗଣ—ଜୟ ମହାରାଜ ଶ୍ରୀ ଶ୍ରୀ ନରସିଂହ ଦେବଙ୍କର ଜୟ ।

[ ନେପଥ୍ୟେ ମାହାରୀମାନଙ୍କ ଗୀତଧ୍ୱନି ଶ୍ରୁତହେଲା ]

ମନ୍ତ୍ରୀ—ବର୍ତ୍ତମାନ ମନ୍ଦିରମଧ୍ୟରେ ବିଗ୍ରହ ପ୍ରତିଷ୍ଠା-କାର୍ଯ୍ୟ ଆରମ୍ଭ ହୋଇଛି । ଆମ୍ଭମାନଙ୍କର ଭକ୍ତିଭରେ ସେ କାର୍ଯ୍ୟରେ ଯୋଗଦେବା ଉଚିତ ।

[ ସମସ୍ତେ ନତମସ୍ତକରେ ଗୀତ ଶୁଣିବାକୁ ଲାଗିଲେ—ମାହାରୀମାନେ ଗୀତ ଗାଇ ଗାଇ ମନ୍ଦିରର ବେଢ଼ା ପରିକ୍ରମା କଲେ ]

ମାହାରୀଗଣ—                    ଗୀତ

ଟାଅ ଲୋ ମଙ୍ଗଳ ଦେଇ କରତାଳି
ମଙ୍ଗଳେ ଭୁବନ ପଡ଼ୁ ଗୋ ଉଛୁଳି ।
ବଜାଏ କି ଶଙ୍ଖ ନୀଳାମ୍ବୁ ସୁନ୍ଦରୀ—
ମେଖଳା-ଅଙ୍ଗନା ଧାଏ ଦୁଲି ଦୁଲି—
ସଲଜେ ଅନିଳ ଟାଳେ କି ଅଞ୍ଚଳି,
ଆରତି ସଜାଏ ସୁରବାଳା ମିଳି ॥

[ ମନ୍ତ୍ରୀ ଶିଳ୍ପିମାନଙ୍କୁ ଡାକିଆଣିବା ନିମନ୍ତେ ଜନୈକ ଦୌବାରିକଙ୍କୁ ଆଦେଶ କଲେ । ଗୀତାନ୍ତେ ଶିଳ୍ପିମାନେ ପ୍ରବେଶ କଲେ । ବିଶୁ, ପ୍ରାଣଦଣ୍ଡେ ଦଣ୍ଡିତ ବ୍ୟକ୍ତି ବଧଭୂମିକୁ ନୀତହେବା ପ୍ରାୟ, ଏକପାର୍ଶ୍ୱରେ ଶିବେଇ ଓ ଅନ୍ୟପାର୍ଶ୍ୱରେ ପ୍ରଥମଶିଳ୍ପି କର୍ତ୍ତୃକ ଧୃତ ହୋଇ ପ୍ରବେଶ କଲେ । ସଭାସଦ୍‌ଗଣ ସାନୁକମ୍ପ-ଦୃଷ୍ଟିରେ ବିଶୁର ଅବସ୍ଥା ଦେଖି ପରସ୍ପର ମଧ୍ୟରେ ନାନାପ୍ରକାର ଭାବଭଙ୍ଗୀ କରିବାକୁ ଲାଗିଲେ ]

ମନ୍ତ୍ରୀ—ଶିବେଇ, ବିଶୁ ଓ ଅପର ଶିଳ୍ପିଗଣ । ଆଜି ତୁମ୍ଭେମାନେ ପ୍ରାଣପାତ ପରିଶ୍ରମ କରି ଯେଉଁ ଅସାଧ୍ୟ ସାଧନ କରିଅଛ, ସେଥିରେ ଯେ କେବଳ ତୁମ୍ଭମାନଙ୍କ ଶିଳ୍ପଗୁରୁତ୍ୱର ପରାକାଷ୍ଠା ପ୍ରଦର୍ଶିତ ହୋଇଛି, ତାହା ନୁହେଁ—ତୁମ୍ଭମାନଙ୍କର ବଂଶମର୍ଯ୍ୟାଦା ଯେ କେବଳ ବର୍ଦ୍ଧିତ ହୋଇଛି, ତାହା ନୁହେଁ—ଆଜି ଗୋଟାଏ ଜାତି, ଗୋଟାଏ ଦେଶ, ଜଗତରେ—ସବୁ ସମାଜରେ—ସବୁ ଯୁଗରେ ଆଦର୍ଶ ସ୍ଥାନ ଅଧିକାର କରିବାକୁ କ୍ଷମ ହୋଇଛି ।

ବିଶୁ—( ହାସ୍ୟ ) ମୋ'ର କୌଶଳରେ, ମନ୍ତ୍ରୀମହାଶୟ । ବିଶୁର କୌଶଳରେ !—ହାଃ—ହାଃ—ହାଃ—

ଶିବେଇ—ବିଶୁ ! ବିଶୁ !

ବିଶୁ—ହିଁ—ହିଁ—ମୁଁ ବିଶୁ—ମୁଁ ସେହି ବିଶୁ—

( ଶିବେଇ ବିଶୁର ପାଟି ଚିପି ଧରିବା )

[ ନେପଥ୍ୟେ ବାଦ୍ୟଧ୍ୱନି ଓ ଦେହରକ୍ଷୀମାନଙ୍କର ପ୍ରବେଶ ]

ମନ୍ତ୍ରୀ—ମହାରାଜ ବିଜେ କଲେଣି—ବିଶୁ ମୁଣ୍ଡରେ ପାଣି ଦେଇ, ତା'କୁ ଟିକିଏ ବସାଇଦିଅ—ଏ' ପର୍ଯ୍ୟନ୍ତ ତା'ର ମତିଭ୍ରମ ଯାଇନାହିଁ ଦେଖୁଛି । ଯାଅ, ସମସ୍ତେ ଯଥାନିର୍ଦ୍ଧାରଣମତେ ଯେ ଯାହାର ସ୍ଥାନ ଅଧିକାର କର ।

[ ବାଦ୍ୟକମେ ଯଥାରୀତରେ ମହାରାଜାଙ୍କ ପ୍ରବେଶ । ବିଶୁ ଛଡ଼ା ସମସ୍ତେ ଠିଆହେବା ଓ ମହାରାଜାଙ୍କ ସିଂହାସନୋପର ଉପବେଶନ ସଙ୍ଗେ ସଙ୍ଗେ ସମସ୍ତେ ଆସନ ପୁନର୍ଗ୍ରହଣ କରିବା;—ବିଶୁ ନିର୍ନିମେଷ ଦୃଷ୍ଟିରେ ସେହି ମନ୍ଦିରର ଅଗ୍ରଭାଗକୁ ଚାହିଁ ରହିଥିବା ]

ସମସ୍ତେ—ଜୟ ମହାରାଜ ଶ୍ରୀ ଶ୍ରୀ ନରସିଂହ ଦେବଙ୍କର ଜୟ ।

ନରସିଂହ—ସଭାସଦ୍‌ଗଣ । ଶିଳ୍ପିଗଣ । ଏହି ମନ୍ଦିରଟି ବର୍ତ୍ତମାନ ମୋ ମନରେ କି ଗୋଟାଏ ଅନନୁଭୂତପୂର୍ବ ନୂତନ ଭାବ ଜାଗରିତ କରି ଦେଉଛି—ବର୍ତ୍ତମାନ ମୁଁ ମୋ'ର ଏହି ମହାକୀର୍ତ୍ତି, ମହାମନ୍ଦିରକୁ ଗୋଟାଏ ସର୍ବଶ୍ରେଷ୍ଠ ଦେବାଳୟ ବା ଶିଳ୍ପକୌଶଳର ପରାକାଷ୍ଠା ବା ଶତ୍ରୁର ପ୍ରାଣ-କଣ୍ଟକ ବୋଲି ଯେତେ ଗର୍ବ ଅନୁଭବ କରୁ ନାହିଁ—ଯେତେ ଗର୍ବ ଅନୁଭବ କରୁଛି ଉନ୍ମାଦିନୀ, ବିଶ୍ୱଗ୍ରାସିନୀ, ଅଜେୟା ପ୍ରକୃତିର ତାଣ୍ଡବନୃତ୍ୟ ବିରୁଦ୍ଧରେ ମାନବ ଆଜି ଜ୍ଞାନ, ବୁଦ୍ଧି ଓ ଶକ୍ତି ପ୍ରଭାବରେ ଗୋଟାଏ ମୂର୍ତ୍ତିମନ୍ତ ବିଜୟସ୍ତମ୍ଭ ସ୍ଥାପନ କରି ପାରିଛି ବୋଲି ।—ଆସ ଶିଳ୍ପି-ଗଣ—ମୋ'ର ବିଜୟୀ ବୀର ଯୋଦ୍ଧୃବୃନ୍ଦ । ମୁଁ ତୁମ୍ଭମାନଙ୍କ ଜନ୍ମଭୂମି ବିଶ୍ୱସମ୍ମୁଖରେ ସ୍ୱହସ୍ତରେ ପୁରସ୍କୃତ କରି ଆଜି ଦେବତାର ଗୌରବ ବିଘୋଷିତ କରିବି—ନିଜେ ଧନ୍ୟ ହେବି—ଜାତିକୁ ମୋ'ର ଧନ୍ୟ କରିବି—ଦେଶକୁ ମୋର ଧନ୍ୟ କରିବି ।

ମନ୍ତ୍ରୀ—ଶ୍ରୀ ଶିବେଇ ସାନ୍ତ୍ରା । ଆସ ଏଣେ—

ରାଜା—ନା, ନା—ସର୍ବାଗ୍ରେ ବିଶୁ—ଯା'ର ଜ୍ଞାନବଳେ ଆଜି ମନ୍ଦିରର କାର୍ଯ୍ୟ ପୂର୍ଣ୍ଣ ହୋଇଛି—ମୋ'ର ମନସ୍କାମନା ପୂର୍ଣ୍ଣ ହୋଇଛି—ମୋର ମାନ ଗୌରବ ଯାହା କିଛି ସମସ୍ତ ପୂର୍ଣ୍ଣ ହୋଇଛି ।

ମନ୍ତ୍ରୀ—ଶ୍ରୀ ବିଶୁ ମହାରଣା—

ବିଶୁ—[ ଏକଦୃଷ୍ଟିରେ କ'ଣ ଦେଖୁଥିଲା ଓ ହୃଦୟମଧ୍ୟରେ ଏକ ଅଭୂତପୂର୍ବ ଯନ୍ତ୍ରଣା ଅନୁଭବ କରୁଥିଲା ]

୧ମ ଶିଳ୍ପି—ବିଶୁ ! ବିଶୁ !

ବିଶୁ—ନା, ନା—ମୁଁ ଡରନାହିଁ—ମୁଁ—

ଶିବେଇ—ବିଶୁ ! ତୁମୁଙ୍କର ଡକରା ହେଉଛି—

ବିଶୁ—ତୁମ୍ଭ ! ରକ୍ଷାକର—ରକ୍ଷାକର—ମୁଁ—

( ଶିଳ୍ପିମାନେ ଘେନିଯିବାକୁ ଉଦ୍ୟତ ହେଲାବେଳେ )

ରାଜା—ଓଃ ! ଏକାବେଳକେ ବଲ୍ଲି-ପାଗଳ ହୋଇ ଯାଇଛି !—ଅତଶସ୍ତ୍ର ଚିନ୍ତାହେତୁ କି ଏହି ଭ୍ରମ ଜନ୍ମିଛି ? ନା, ନା—ମୁଁ ଯେଉଁ ମୁଣ୍ଡକାଟ ଭୟ ଦେଖାଇଥିଲି, ସେହି ଭୟରୁ ନିଶ୍ଚୟ ଏହି ବିକାର । ଏ ପର୍ଯ୍ୟନ୍ତ କ'ଣ ସେ ଭୟ ଦୂରୀଭୂତ ହୋଇନାହିଁ ?—ବିଶୁ ! ବିଶୁ ! କିଛି ଭୟ ନାହିଁ ।

ବିଶୁ—ଭୟ ନାହିଁ ? ଭୟ ନାହିଁ ?—ମଣିମା ! ମଣିମା ! ତେବେ ମୁଁ ନିର୍ଭୟ ?

ନରସିଂହ—ହଁ, ତୁ ନିର୍ଭୟ ।

ବିଶୁ—ମୋତେ ଛାଡ଼ିଦିଅ—ମୁଁ ନିର୍ଭୟ ( ପୁଣି ଦେଉଳ ଆଡେ ଚାହିଁ )—ନା, ନା, ମନା କର ନା—ମନା—

ନରସିଂହ—ବିଶୁ ! ସେଠାରେ ଏ'ପରି ଭୟର କାରଣ କ'ଣ ଦେଖିଲୁ ? ଏ'ତ ତୁମର କାର୍ଯ୍ୟ—ତୁମର କୀର୍ତ୍ତି ! ତୁମର ନାମ ମୁଣ୍ଡରେ ଧରି ମନ୍ଦରଟି ଠିଆ ହୋଇଛି ସିନା ?—ଏହି ନିଅ —

[ ଶିଳ୍ପିମାନେ ବିଶୁକୁ ମହାରାଜାଙ୍କ ନିକଟକୁ ଘେନିଗଲେ ]

ତୁମ୍ଭର ଏହି ମହତ୍‌କାର୍ଯ୍ୟର ଯଥୋଚିତ ପୁରସ୍କାର ।

[ନାନାବିଧ ବହୁମୂଲ୍ୟ ସାମଗ୍ରୀ ପୂର୍ଣ୍ଣ ଗୋଟିଏ ପାତ୍ର ବିଶୁ ହସ୍ତରେ ପ୍ରଦାନ କଲେ ]

ବିଶୁ—(ଧାରଣୀ ମାନେ ନିକ୍ଷେପ କରି) ପୋଡ଼ିଗଲୁ—ପୋଡ଼ିଗଲୁ—ଜଳନ୍ତା ଅଙ୍ଗାର ଗୁଡ଼ାଏ—ଜଳନ୍ତା—ଓଃ ! ପାଣି—ପାଣି—

( ଉଦ୍‌ବିଦ୍‌ ଜ୍ଞାନଶୂନ୍ୟହୋଇ ପ୍ରସ୍ଥାନୋଦ୍ୟତ )

[ ଧର୍ମ୍ମା-ମାତାର ସେହି ଦିଗରୁ ପ୍ରବେଶ ]

ଧର୍ମ୍ମା-ମା—ପାଣିରେ କି ଲୋଡ଼ିବ, ପ୍ରଭୁ ?

ବିଶୁ—( ଧର୍ମ୍ମା-ମାକୁ ଦେଖି ) କିଏ ? କିଏ ?—( ମୂର୍ଚ୍ଛିତ ହୋଇ ପତନ )

ଧର୍ମ୍ମା-ମା—ପ୍ରଭୁ ! ପ୍ରଭୁ ! ( ନିଜକୋଡ଼ରେ ଧାରଣ କରି )—ଏ' ନିଆଁ ଯେ ଅପଣ ନିଜେ ଜାଳିଛନ୍ତି—ଲିଭାଇବାର ଉପାୟ ଆପଣଙ୍କର ନିଜ ହାତରେ ମିନା ।—ସତକଥା, ପ୍ରଭୁ ! ଆପଣଙ୍କର ପତ୍ର ପାଇଲି ଯେତେବେଳେ—ମୋ'ର ପୁତ୍ରର କୀର୍ତ୍ତି ଶୁଣିଲି ଯେତେବେଳେ, ମୋ'ର ଚକ୍ଷୁ ଆନନ୍ଦାଶ୍ରୁରେ ପ୍ଲାବିତ ହୋଇଗଲା—ହୃଦୟ କି ଆବେଗରେ ନୃତ୍ୟ କରି ଉଠିଲା ।—ସେ ଯେ କି ଆନନ୍ଦ, କି ଉଚ୍ଛ୍ୱାସ ତାହା ଏହି କୀର୍ତ୍ତି ପ୍ରତ୍ୟକ୍ଷରେ ଦର୍ଶନ କରି ଶତସହସ୍ର ଗୁଣେ ଯେପରି ବଢ଼ି ଉଠିଛି—ଏ' ସାଗରର ବୋଧହୁଏ ତିରି ରଖିବାର କ୍ଷମତା ନାହିଁ—ନା, ନା—ସାଗ୍ ବିଶ୍ୱର ବୋଧହୁଏ ନାହିଁ । ( କମେ କମେ ଉତ୍ତେଜିତା ହୋଇ ଉଠୁଥିବା ) ପ୍ରଭୁ ! ପ୍ରଭୁ ! ଉଠ—ଉଠ ! ସତ୍ୟକଥା ପ୍ରକାଶ କର ! ମିଥ୍ୟାବରଣରେ ଘୋଡ଼ି ହୋଇ ନିଜେ ଦଗ୍ଧ ହୁଅ ନାହିଁ—ନିଜର ସମ୍ମାନ ଓ ଗୌରବ ଦଗ୍ଧ କରିଦିଅ ନାହିଁ—

ଶିଳ୍ପିଗଣ ! ସତ୍ୟାଗ୍ରହୀ ତୁମ୍ଭେ—
କପଟ । ଭୟ, ସତ୍ୟ ପ୍ରକାଶନେ ?
ସତ୍ୟ—ଜ୍ଞାନ ବଳେ ଉଦ୍ଭବ
ନିର୍ମିତା ପ୍ରକୃତ,
ସତ୍ୟଶ୍ରମେ ପିନା ଏ' ସୌଧ କୀରତ ।—
ଯେ ସତ୍ୟ କାରଣେ
ପିତୃହସ୍ତେ ପୁତ୍ରଶିର
କରାଇଛ ନାଶ—
ନା, ନା—ବୀର ଶିଶୁ ମୋ'ର
ଯେ ସତ୍ୟ-ଗୌରବେ,
ସ୍ୱ ହସ୍ତେ ସ୍ୱ-ଦେହ କରନ୍ତୁ ଅର୍ପଣ
ଏହ ନୀଳସିନ୍ଧୁ ବକ୍ଷେ—
ସେହ୍ୱ ସତ୍ୟ କରୁଅଛ ଦଳିତ ଚରଣେ.
ହୋଇ ଜ୍ଞାନୀ—ହୋଇ ମାନୀ—
ହୋଇ ସତ୍ୟସନ୍ଧ—ବୀର—ବିବେକୀ ମନୁଷ୍ୟ ?

ନରସିଂହ—( ଉତ୍ତେଜିତ ହୋଇ ) କିଏ ଏହ ନାରୀ ?

ଧର୍ମ୍ମା-ମା—ମହାରାଜ ! ସତ୍ୟକଥା ଶୁଣ ଏବେ—
ଏ' ଯେଉଁ କୀରତ-ସ୍ତମ୍ଭ
ରଜତ ସମ୍ମୁଖେ,
ପୂର୍ଣ୍ଣ ମାନ କୌଶଳେ, ଶିଶୁର—
ଦ୍ୱାଦଶ ବର୍ଷୀୟ—ପୁଣି ଅତ କୋମଳାଙ୍ଗ;
ମାତା ମୁହିଁ ତା'ର—
ପିତା ଏହ ଭାଗ୍ୟବାନ୍ । ( ବିଶୁକୁ ଉଠାଇବା )
ଉଠ, ଉଠ, ବୀର ।

ବଣୁ—( କ ଏକ ଅର୍ଥଶୂନ୍ୟ ଦୃଷ୍ଟିରେ ନିରୀକ୍ଷଣ କରି) ନା, ନା—
ମୁଁ, ମୁଁ—(ଅର୍ଦ୍ଧୋତ୍ଥିତ ହୋଇ ପୁଣି ପଡ଼ି ଅଚେତନ ହେବା)

ଧର୍ମା-ମା—( ବିକଳ ଭାବେ ଗୃହିଁ ) ପ୍ରଭୁ । ପ୍ରଭୁ । (ଧାରଣ କରିବା)
ନରସିଂହ—କି ପ୍ରହେଳିକା ଏ ?

[ସର-ମା'ର ସଚର ଶବଦେହ ବହନକରି ପାଗଳିନୀ ହୋଇ ପ୍ରବେଶ—ଗୋଟାଏ ଦୁର୍ଗନ୍ଧରେ ସମସ୍ତେ ହଠାତ୍ ଅସ୍ଥିର ହୋଇ ଉଠିଲେ—ରକ୍ଷୀଗଣ ତଡ଼ିଦେବାକୁ ଯାଉଥିଲେ—ମହାରାଜା ଇଙ୍ଗିତ ଦ୍ୱାରା ନିରସ୍ତ କରାଇଲେ ]

ସର-ମା—ଏ' ପ୍ରହେଳିକା ତୁମେ କାହୁଁ ବୁଝିବ, ମହାରାଜ ?—କିନ୍ତୁ ମୁଁ ବୁଝିଛି—ମୋ'ର ରକ୍ତ ପରା । ମୋ'ର ମାଉଁସ ପରା । ତା' ନାଡ଼ୀକଥା ଜାଣି ପାରିବି ନାହିଁ ?—ସେ ଯେ ଧର୍ମାକୁ ଭଲପାଏ ଏ' କଥା କ'ଣ ମୋତେ ଅଛପା ? ଧର୍ମା ଯେ ମୋ' ପୁଅ, ଏ' କଥା କ'ଣ ମୋ ଅନ୍ତର କହେ ନାହିଁ ?—ଅଗୋ ପିଲାର ମା ହୋଇ ପିଲାକୁ କି କେହି ହେଳା କରି ପାରେ ?—ଖାଲି ସେହି ଲୋକନିନ୍ଦା ଭୟରେ ସିନା ।—ଦେଖ, ଦେଖ, ସେଦିନ ସେହି ଡେଉଁରିଆଟା ସର ବେକରୁ ଖସାଇ ପିଲାଟା ବେକରେ ବାନ୍ଧିଦେଲି ବୋଲି, ଗାଁ ଯାକ ଯଉଁ ଟାହୁଲି, ଟାପରା—ଦୁଆର ବନ୍ଦ ପରା ଉଆଁଇ ଦେଲେ ନାହିଁ । ନା, ଆଉ ମୁଁ ମାନିବି ନାହିଁ—ଆଜ ମୁଁ ଶୁଣିବି ନାହିଁ ।—ସର । ସର । ଦେଖ୍ ତୋ' କଥା ରଖିଛି କି ନାହିଁ—ଧର୍ମା ସଙ୍ଗେ ନିଟଷ୍ଟ—ଏହି ଯେ ଧର୍ମା-ବୋଉ—ଏଁ ଧର୍ମା-ବାପ ବି ? ବାଃ—ବାଃ ! ବେଶ୍ ହୋଇଛି

—ଧର୍ମ୍ମା କାହିଁ ? ଅଲେ ଧର୍ମ୍ମା-ବୋଉ ! ପୁଅ କାହିଁ ମ ?— କେଉଁଠି ଅଛୁ ?— ତୁ ମୃତ୍ୟୁଖାଇ କ’ଣ କହୁଚୁ କି ? ଯମ ମୁହଁକୁ ଫେଲିଦେଉ ପଛକେ ତେବେ ବ—ର’—ର’—ମୁଁ ପୁଅଟାକୁ ଅଗେ ଖୋଜି ଅଣେ—

( ଉନ୍ମାଦିନୀ ଭାବେ ପ୍ରସ୍ଥାନ )

ଧର୍ମ୍ମା-ମା—ଅର ! ସର ! ତୁ’ ବି ଅଜି ନାହୁଁ ?—ସେହି ଜ୍ୱର କ’ଣ ଅବଶେଷେ ତୋର କାଳଜ୍ୱର ହେଲା ? (ଶୂନ୍ୟଦୃଷ୍ଟିରେ ଚୁହିଁଥିବା—ଅଶ୍ରୁଧାର ସ୍ୱତଃ ପ୍ରବାହିତ ହେବା )

ନରସିଂହ—ଏ’ ପୁଣି କେଉଁ ନାରୀ—ଶିଶୁ-ଶବ ବକ୍ଷେ ? ଶିବେଇ ! କଥା କ’ଣ ?

ଶିବେଇ—( ନତଜାନୁ ହୋଇ ) ମହାରାଜ ! ମହାରାଜ ! ପ୍ରକୃତରେ ଅମ୍ଭେମାନେ ଦୋଷୀ !—ଏହି ଦେଉଳର ଚୂଡ଼ା ଅମ୍ଭେମାନେ କେହି ସ୍ଥାପନ କରି ପାରିଲୁ ନାହିଁ; ମାତ୍ର ବାରବର୍ଷର ଶିଶୁ-ପୁତ୍ର ଧରମା ଅନାୟାସରେ ତାହା ନିମିଷକରେ କରିଦେଲା । ସେହି ହିଂସାରେ—

ନରସିଂହ—ମାରିଅଛ ତା’କୁ ? ଲଜ୍ଜା ନାହିଁ କହିବାକୁ ?—କାହିଁ ସେହି ଶିଶୁ ? ଅଣ ଏହିଠାରେ—ମନ୍ତ୍ରୀ, ଅଣାଅ ସେ ଶିଶୁ—

ଶିବେଇ—( ଅବନତ ମସ୍ତକରେ ଠିଆହେବା ଓ ମନ୍ତ୍ରୀ, ଶିଳ୍ପୀଗଣ ସଙ୍ଗେ କଥାବାର୍ତ୍ତା କରୁଥିବା )

ନରସିଂହ—ଉଃ—କି ଅଲୌକିକ କଥା !—ଲୌକିକ ଶକ୍ତିର ବହିର୍ଭୂତ କି ତେବେ ଏହି କାର୍ଯ୍ୟ ଥିଲା ?—ନା—ନା —ଶିଶୁ ହେଲେ ମଧ୍ୟ ସେ’ତ ମନୁଷ୍ୟ !—ଶିଶୁ ହେଉ,

ବୃଦ୍ଧ ହେବ, ମନୁଷ୍ୟ ଦ୍ୱାରହିଁ ଏହ କୀର୍ତ୍ତି ମୋ'ର ସ୍ଥାପିତ ହୋଇଛି । କାହିଁ—କାହିଁ ସେହ ଶିଶୁ ?
ଅଣ ତ୍ୱରା—

[ କନୈକ ନୋକାଅର ପ୍ରବେଶ ]

ନୋକାଅ—( ସଭୟେ ) ମଣିମା । କାଲରେ ଟୋଟାଏ ପିଲ-ମୁର୍ଦାର—

ଧର୍ମ୍ମ-ମା—'ମୁର୍ଦ୍ଦାର' । ମୋ'ର ଧର୍ମ୍ମୁର କି ?—

( ଅକୁଳ ନେତ୍ରରେ ଗୃହିଁବା )

ନରସିଂହ—ମୁର୍ଦ୍ଦାର । କାହିଁ ?—କାହିଁ ?—

ଅରେରେ ରାକ୍ଷସ ଦଳ ।
ଏହ କି ସେ ବୀର ଶିଶୁ—
ପୋଡ଼ି ହଂଧାନଲେ ତବ,
ପୋତିଥିଲ ନେଇ ସମୁଦ୍ର ଗର୍ଭରେ ?—
ନା, ନା—ଅସମ୍ଭବ—ଅସମ୍ଭବ –
ମର ନାହିଁ ସେହ—ମର ପାରେ ନାହିଁ,
ଅଦ୍ଭୁତ ବାଳକ – ଅଦ୍ଭୁତ, ଅଦ୍ଭୁତ
ସେ ଯେ ସେନାପତି ମୋର
ପ୍ରକୃତିର ଦ୍ୱନ୍ଦ୍ୱେ ।
କାହିଁ ସେହ ବୀର ଶିଶୁ ?—
ଅଣ ତ୍ୱରା—
ଅଣାଅ—ଅଣାଅ, ମନ୍ତ୍ରୀ ।
ଘୋଷିବ ସ୍ୱ-କରେ ମୁହିଁ
ଦେଇ ପୁରସ୍କାର;
ତା' ପରେ—ତା'ପର—

ଏହି ଲୋଭୀ କୁକ୍କୁରର ଦଳେ—
ତା'ର ହସ୍ତେ ଦଅଇବ
ଯୋଗ୍ୟ ପୁରସ୍କାର—

ମନ୍ତ୍ରୀ—( ଶିବେଇ ଓ କେତେକ ଶିଳ୍ପି ପ୍ରତି ) ଚାଲ, ଚାଲ—ମୁଁ ସେ କଥା ମାନିବ ନାହିଁ—ନିଜ ଇଚ୍ଛାରେ କି କେହି କେବେ ମରିପାରେ ? ଯଦି ମାରି ନ ଥାଅ, ନିଶ୍ଚୟ କେଉଁଠି ଲୁଚାଇ ରଖିଚ—[ ଏହି ସମୟରେ ନୋଳିଆ-ମାନେ ସେହି ଶବଦେହଟିକୁ ଆଣି ରାଜାଙ୍କ ସାକ୍ଷାତରେ, ସମୁଦ୍ରତୀରରେ ରଖିଦେଲେ—ଶିଳ୍ପିଗଣ ସଭୟେ ଚିତ୍କାର କରି ଉଠିଲେ—'ଏହି—ଏହି' ]

ଧର୍ମା-ମା—ବାବା ! ( ଶିଶୁର ମୃତଦେହ ଉପରେ ପତିତ ହେବା )

ନରସିଂହ—( [illegible] ଉଠାଇ ଶିଶୁଟିକୁ ଦେଖୁ ଦେଖୁ )
ଓଃ !—( ଶିଳ୍ପି ମାନଙ୍କପରେ ଦୃଷ୍ଟି ପଡ଼ିବାରୁ )

କିଏ ଅଛ ?—ବାନ୍ଧ ଏହି ଶିଳ୍ପିଗଣେ !
ଘେନିଯାଅ ବଧ୍ୟଭୂମେ—
କାଟି ଜଣେ, ଜଣେ
କର ସ୍ତୂପ ଗଣ୍ଡି ଏକ ଠାବେ,
ମୁଣ୍ଡ ଅନ୍ୟ ଠାବେ —
ରକ୍ତସ୍ରୋତେ ଭାସୁ ଏ ମେଦିନୀ —
ରକ୍ତରାଗେ ଲୁଚିଯାଉ ସମୁଦ୍ରର ଆଭା
ମାତି ଉଠୁ ଗଗନର ଶୋଭା
ସିନ୍ଦୂରର ରାଗେ—
ରକ୍ତ—ରକ୍ତ—

ରକ୍ତ ଚତୁର୍ଦ୍ଦିଗେ—
ରକ୍ତ ତେଜ ଖେଳ ବୁଲ
ବାହାରେ ଅନ୍ତରେ ।

ମନ୍ତ୍ରୀ ଓ ସଭାସଦ୍‌ଗଣ— ( ସଭୟେ ) ମହାରାଜ ।

ନରସିଂହ—( ନିରୀକ୍ଷଣ କରୁ କରୁ ) ଓଃ—

ଏହି କି ସେ ପ୍ରତିଭାର ପ୍ରତିମୂର୍ତ୍ତି,
ଲୁଣ୍ଠିତ ଧରାରେ—
ମୋ'ର ଗରବର ଧନ—
ରାଜ୍ୟର ସମ୍ପଦ—
ବିଶ୍ୱର ବିଭବ ।
ଅରେ ରେ, ରାକ୍ଷସଗଣ ।
ଦେଖ ଥରେ ନରଚକ୍ଷୁ ଖୋଲି,
କରିଅଛ କିସ ?—
ମଥାମଣି ମଥିଅଛ ସିନା
ପଶୁର ସମାନ ?—
ସାମାନ୍ୟ ଜୀବନ ପାଇଁ,
ଛାର ସମ୍ପଦର ଲୋଭେ
ଦେଇଅଛ ବିସର୍ଜନ ସିନା
ମନୁଷ୍ୟତ୍ୱ ନିଜ ?—
ଅରେରେ, ପିଶାଚଗଣ ।
ମାଗିଥାନ୍ତି ଯେବେ
ସମଗ୍ର ସାମ୍ରାଜ୍ୟ ମୋ'ର,
ସ୍ୱାଧୀନତା ସୁଖ ମଧ୍ୟ
ତହିଁ ସଙ୍ଗେ ଯେବେ,

ଦେଇଥାନ୍ତି ଅନନ୍ଦରେ,
ଅନନ୍ଦରେ କର ସେବା
ବାଞ୍ଛୁଥାନ୍ତି ଧନ—
ଏହି ଶିଶୁର ଜୀବନ ମାତ୍ର
ପାଇଥିଲେ ଭିକ୍ଷା ।

ଧର୍ମ୍ମା-ମା—ମହାରାଜ ।
କି ପାଁ ଦୁଃଖ—କାହିଁ ଶୋଚନା ତବ ?
କିଏ କହେ ମରିଅଛି ପୁତ୍ର ମୋ'ର ?—
ବୀର ପୁତ୍ର ମୋର—
ସେନାପତି ତବ ପ୍ରକୃତିର ଦ୍ୱନ୍ଦ୍ୱେ—
ପ୍ରକୃତି ସଂଗ୍ରାମେ ଜିନି
କରି ପଦାଘାତ ପ୍ରକୃତିର ଶିରେ,
ପୁଣି ବକ୍ଷେ ତା'ର
ପୋତିଣି ସଦମ୍ଭେ ବିଜୟ ପତାକା,
ନିଦ୍ରା ଯାଇଅଛି ଷଣେ—
ଅନନ୍ତ ଶଯ୍ୟାରେ
ଯେପରି ନାରାୟଣ,
କ୍ଲାନ୍ତ—ଶ୍ରାନ୍ତ—ଅବସନ୍ନ ଅତି
ଅବତାର ଶେଷେ ।
( ଧବ୍ୟ ଦୃଷ୍ଟିରେ ଗୃହିଁ ଠିଅହେବା )

ନରସିଂହ—ମା ! ମା ! କିଏ ତୁହି ?—
ତୁହି କି ବିଶ୍ୱଜନନୀ,
ମାନବ ଅବାରେ ?
ଅଣ, ଅଣ ଶୀଘ୍ର, ମନ୍ତ୍ରୀ !

ପାମରର ଦଳେ—
ଦଅ ବଳି ଏହୂଠାବେ, ମାତାର ସମ୍ମୁଖେ ।

ଧର୍ମା-ମା—ରୁଧିର ଲୋଲୁପା ନୁହେଁ, ମାତା ତବ
ମହାରାଜ ।
ମାତୃ-ଙ୍କେ ଅଙ୍କ
ସନ୍ତାନତା ଯଦି ଦୀନା ପ୍ରଜା ତବ—
ଏତକ ମିନତି
ପ୍ରବଠାରେ ତା'ର—ଦଅ କ୍ଷମା
ଶିଳ୍ପିଗଣ ପ୍ରାଣ—
କର ରକ୍ଷା ତ୍ୟାଗର ମହିମା,
ଧର୍ମ୍ମର ମୋହର ।
ବୀର ସେନାପତି ତବ
ଦେଖାନ୍ତୁ ଜଗତେ,
ଯୁଦ୍ଧ ଜୟ ଲକ୍ଷ୍ୟ ତା'ର
ଜୀବନ ସଂଗ୍ରାମେ ।—
ବିଜୟ ମୁକୁଟ ଶୋଭୁ
ଜାତିର ମସ୍ତକେ—
ଦେଶର ମସ୍ତକେ—
ବିଶ୍ୱର ମସ୍ତକେ ।

ଶିଳ୍ପିଗଣ ଓ ଶିବେଇ—ମା ! ମା !—(ସାଷ୍ଟାଙ୍ଗେ ପ୍ରଣାମ କରିବା)

ନରସିଂହ— ବିଶ୍ୱର ଜନନୀ—ମା ! ମା !
କର କ୍ଷମା—ଦୋଷୀ ମୁହିଁ—( ଅବନତ ହେବା )

ଧର୍ମା-ମା— ମହାରାଜ ! ମହାରାଜ !—

ନରସିଂହ— ମୋର କୁଗ୍ରଦେଶୁଁ ସିନା

ଶିଶୁ ଅଙ୍କେ ଚାହିଁ ଅଛି—

ଧର୍ମ୍ମା-ମା—ନା, ନା—ନ କହ ଏସନ ।
ମୋ'ର ପୁତ୍ର ଅଟେ
ଅନନ୍ତ ଅମର –
ଅନନ୍ତର ବକ୍ଷେ
ଲଭୁଛି ବିଶ୍ରାମ ।

ନରସିଂହ—ମା । ମା ।
ମୃତ୍ୟୁମୟ ପୁତ୍ର ତୋ'ର ମୁହିଁ –
ଘେନ, ଘେନ ପ୍ରଣାମ ସାଷ୍ଟାଙ୍ଗ ।
( ପ୍ରଣାମ କରିବା )
[ ସମସ୍ତେ ସାଷ୍ଟାଙ୍ଗ ପ୍ରଣାମ କରିବା ]

ଧର୍ମ୍ମା-ମା—ରକ୍ଷାକର – ରକ୍ଷାକର,
ମୁହିଁ ଦୀନା ପ୍ରଜା ତବ ।—
( ବିଷ୍ଣୁ ନିକଟ ଦୌଡ଼ିଯାଇ )

ପ୍ରଭୁ । ପ୍ରଭୁ ।
ନିଶ୍ଚିନ୍ତେ କିପରି
ଯାଇଅଛ ନିଦ୍ରା ?
ଦେଖ, ଦେଖ – ଜଗତ ଜାଗ୍ରତ ଆଜି
ତବ ପୁତ୍ର ଗୁଣେ –
( ବିଷ୍ଣୁକୁ ଉଠାଇ ଉଠାଇ ) ଉଠ, ଉଠ ପ୍ରଭୁ !
କର ଆନନ୍ଦର ଧ୍ୱନି –
କର ଜୟଗାନ –
ଆସିଅଛି ବୀରପୁତ୍ର
ପିତାପାଖେ ଫେରି,

ଜୟମାଲ୍ୟ ପିନ୍ଧ ।
ନିଅ କୋଳେ ଟେକି,
କର ଚୁମ୍ବଦାନ—
ଯୋଗ୍ୟ ପୁରସ୍କାର ତା'ର,
ପିତୃଦତ୍ତ ପୁଜେ ।

( ଅପେ ଅପେ ଅଶ୍ରୁ ବୋହୁ ଯାଉଥିବ। )

ବଣ୍ଟୁ—( ଉଠି ) ପୁଜ । ପୁଜ ।—କାହିଁ ? କାହିଁ ?

ଧର୍ମ୍ମା-ମା—ଏହି ଯେ ଧର୍ମ୍ମୁ ତୁମର—

( ଧର୍ମ୍ମାର ଶବଦେହକୁ ଦେଖାଇ ଦେବ। )

ବଣ୍ଟୁ—ଧର୍ମ୍ମା—ଧ—( ସେହି ମୃତଦେହ ଉପରେ ପତିତ ହୋଇ ତାକୁ ଦୃଢ଼ାଲିଙ୍ଗନ କରିବ। ) ପିତା ପୁଜର ମିଳନ । ମୁଁ ହସିବି ।—ମୁଁ ଗାଇବି ।—ମୁଁ ନାଚିବି ।—ବୀରପୁଜ ମୋ'ର —ସତ୍ୟସନ୍ଧ ପୁଜ ମୋର ।—ଧର୍ମ୍ମନିଷ୍ଠ ଧର୍ମ୍ମୁ ମୋର ।

ନରସିଂହ—( କାନ୍ଦପକାଇଲେ ଓ ମନ୍ତ୍ରୀକୁ ଡାକି ଏକାନ୍ତେ କହିଲେ ) ସୁସଜ୍ଜିତ କର ମୋ'ର ହସ୍ତିଦନ୍ତ ନିର୍ମିତ ପାଲିଙ୍କିଟି ଶୀଘ୍ର ଏଠାକୁ ଅଣାଅ ।

[ ସର-ମାର ପ୍ରବେଶ ]

ସର-ମା—ବାଃ—ବେଶ୍, ଭଉଣି । ପୁଅକୁ ଏଠି ଲୁଚାଇ ରଖି ହିଅଟାକୁ ମୋ'ର ଏତେ ହଇରାଣ କରୁଚ ନା ?

ଧର୍ମ୍ମା-ମା—( କୁଣ୍ଢାଇ ପକାଇ ) ଆଉ ହଇରାଣ କରିବି ନାହିଁ, ଭଉଣୀ । ଆଉ ଲୁଚାଇ ରଖିବି ନାହିଁ—ସେ କି ଲୁଚି ରହି ପାରେ ? ସରକୁ ଛାଡ଼ି କି ସେ ରହିପାରେ ?—ଦେଖିଲ— ଦେଖିଲ, କେମିତି ସରକୁ ନେବାକୁ ଧାଇଁ ଆସିଚି ।—ଅହା, ସର ବି ତାକୁ ଦଣ୍ଡେ ଛାଡ଼ି ରହି ପାରିଲା ନାହିଁ ।

ସରଂ-ମା—କେମିତି ରହି ପାରିବ ? ସର ପରା ଛା’ର—କୋଉ କରି କେତେ ଝାଣି ରଖିବ ? ( ସରର ଶବଦେହକୁ ନେଇ ଧର୍ମ୍ମାର ଶବଦେହ ନିକଟରେ ରଖିଦେବା )

ଧର୍ମ୍ମା-ମା—ଭଉଣି । ଭଉଣି । ଜ୍ୱରବେଳେ ସର କହୁ ନ ଥିଲା –“ଭାଇ ପାଖକୁ ଯିବ – ଅଜ ରହି ପାରିବ ନାହିଁ— ମୋତେ ସେଠାକୁ ଘେନିଗ୍ଲ ?” ଏ ଗୁଡ଼ାକ କ’ଣ ସତ ନୁହେଁ ? – ଅମେ ସିନା ବାଉଳା ବକୁଚ ବୋଲି ଉଡ଼ାଇ ଦେଇଥିଲୁ ।

ସର-ମା—ତୁ ପୁତୁଖାଇ ସିନା ଉଡ଼ାଇ ଦେଇଥିଲୁ—ମୁଁ ଟିଲାର ମା ହୋଇ କି ଛା’ ପାରିଲି ନା ପାରିବି ? – ଦେଖିଲୁ ଝିଅର କଥା ରଖିଚ କି ନାହିଁ—କାଖକର ଛାକୁ ଏକା ନିଃଶ୍ୱାସକରେ ଏଠାକୁ ଧାଇଁ ଅସିଚ କି ନାହିଁ ? – ଛୁଡ଼, ଛୁଡ଼ —ଅସିଲ ( ବିଶ୍ୱ ପ୍ରତି ) ମ’ କେମନ୍ତକା ମଣିଷ ତୁମେ—ଉଠ, ଉଠ— ଉଠିଲ, ପୁଅର ବାହାଘର –

ବିଶ୍ୱ—ପୁଅର ବାହାଘର । – ( ଚମକି ଠିଆହେବା )

ସର-ମା—ଜଲଦି ସାରି ଦେବା, ଅସିଲ, ଅସିଲ । – ( ହୁଳହୁଳି ଦେଇ ବୁଇଜଣଙ୍କୁ ମିଳାଇଦେଇ ଚୁମ ଖାଇବା )

ଧର୍ମ୍ମା-ମା—ବାଃ—ବାଃ—‘ବାହାଘର’ – ‘ବାହାଘର’ ।—ଏତେ ଦିନେ ମୋ’ର – ( ଶବ ନିକଟରେ ବସିପଡ଼ି ଚୁମଖାଇବା )

ବିଶ୍ୱ—(ଉନ୍ମାଦଭାବେ) ପୁଅର ମୋର ବାହାଘର – ମୁଁ ନିଶ୍ଚିନ୍ତ ହୋଇ ରହିଚି କିପରି ?—ବାଜା କାହିଁ ? – ବେସୁନ କାହିଁ ? ରହ, ରହ ମୁଁ ଜାତିଭାଇଙ୍କୁ ନିମନ୍ତ୍ରଣ କରି ଘେନି ଅସେତ— ( ଯିବାକୁ ଉଦ୍ୟତ ହୋଇ ଏବଂ ଦେଖି ) ଏହି ଯେ ଭାଇମାନେ ମୋର । ଅସ, ଅସ—ମୋ’ର ଧର୍ମ୍ମାର ଅଜ

ବାହାଘର—ତୁମର ପୁଅର ବାହାଘର ମ।—ଏଁ।—ଏପରି ମୁହଁ ଶୁଖାଇ ଦେଇଛ କାହିଁକି ? ହସ—ନାଚ—ସେ ଯେ ତୁମର ମାନ ରଖିଛି—ତୁମର ପ୍ରାଣ ରଖିଛି।—କହିଲ, ଏହି ଦେଉଳର ମୁଣ୍ଡି କ'ଣ ଆମେ ମାରି ପାରିଲୁ ? ସେ କେମିତି ଦଣ୍ଡକରେ ମାରିଦେଲା—ଆମର ମାନ ରଖିଲା—ଜାତିର ମାନ ରଖିଲା—ଦେଶର ମାନ ରଖିଲା। ଆମେ କ'ଣ ତା'ର ମାନ ରଖିବା ନାହିଁ ?

( ଶିଳ୍ପୀମାନେ ଲଜ୍ଜାବନତ ହେବେ )

ନରସିଂହ—ବିଶୁ। ବିଶୁ। ତୋତେ ଗୋଟାଏ କାମ କରିବାକୁ ହେବ।

ବିଶୁ—କହ ମ, ମୋର ପୁଅର ବାହାଘର।

ନରସିଂହ—ତୋର ପୁଅର ଗୋଟିଏ ପ୍ରସ୍ତରମୂର୍ତ୍ତି ମୋତେ ଆଜି ଖୋଳିଦେବାକୁ ହେବ—ଠିକ୍ ତା'ର ଅନୁରୂପ—

ବିଶୁ—ମୋ'ର ପୁଅର ପ୍ରସ୍ତରମୂର୍ତ୍ତି ? ଧର୍ମାର ?

ନରସିଂହ—ହଁ, ସେହି ଡିଅଁଟିର ମଧ୍ୟ—

ବିଶୁ—ହାଃ—ହାଃ—ସେହି ଡିଅଁଟିର ମଧ୍ୟ ? ମୁଁ ଏହିକ୍ଷଣି—ଏହି ଦଣ୍ଡକରେ ମୋର ପୁଅ ଆଉ ଜୁଆଁବୋହୂଟିର ମୂର୍ତ୍ତି ଖୋଳି ଦେଉଛି, ଯାଆନ୍ତେ—( ପଥରଟିଏ କାହିଁ ଖୋଜିଆଣି ଅଙ୍ଗୁଳିରେ ଗଢ଼ିବାର ଅଭିନୟ କରିବ )

୧ମ ସଭାସଦ୍—ମହାରାଜ। ବିଶୁ ବର୍ତ୍ତମାନ ପାଗଳ—ଆଦେଶ ହେଲେ, ଅନ୍ୟ କେଉଁ ଶିଳ୍ପିଦ୍ୱାରା—

ନରସିଂହ—ଅସମ୍ଭବ। ଅସମ୍ଭବ।—ଏ କାର୍ଯ୍ୟ ବିଶୁ ଛଡ଼ା ଅନ୍ୟ କାହାର ପକ୍ଷେ ଅସମ୍ଭବ। ଅଚ୍ଛା, ବିଶୁ ଭଲ ହୋଇଗଲେ—

୧ମ ସଭାସଦ—କିନ୍ତୁ, ଶବ କ ତେତେଦିନ—

ନରସିଂହ—ଅବଶ୍ୟ ରକ୍ଷିବାକୁ ହେବ—ଯେ କୌଣସି ଉପାୟରେ ରକ୍ଷିବାକୁ ହେବ। ମୋ'ର ଉଦ୍ଦେଶ୍ୟ, ସଭାସଦ୍‌ଗଣ—ଏହି ବାଳକର ପ୍ରତିମୂର୍ତ୍ତି ମୁଁ ଦେଉଳର ସମ୍ମୁଖରେ ଅନ୍ୟ ଏକ ଦେଉଳ ନିର୍ମାଣ କରାଇ ତନ୍ମଧ୍ୟରେ ପ୍ରତିଷ୍ଠା କରିବି—ତାର ପୂଜା ମଧ୍ୟ ଠିକ୍ ଦେବତାଙ୍କ ପୂଜାପରି, ନା, ନା ତାହାଙ୍କଠୁ ଅଧିକତର ଭାବେ ନିତ୍ୟ ସମ୍ପାଦିତ ହେବ;—ମାନବର ଏହି ଅପରିମିତ ଶକ୍ତି ନିକଟରେ ମଧ୍ୟ ପ୍ରବଳ ଦୈବଶକ୍ତି ଯେ ପରାଭୂତ, ତାହାର ଏ' ଗୋଟାଏ ସ୍ମୃତି ସ୍ତମ୍ଭ।—କି ମନୁଷ୍ୟ, କି ଦେବତା ସମସ୍ତେ ଅବନତ ମସ୍ତକରେ ଏହି ଅଦ୍ଭୁତ ମାନୁଷୀ ଶକ୍ତିର ମହିମା ଗାନ କରୁ କରୁ ସ୍ତମ୍ଭିତ ଓ ଭକ୍ତିରେ ଅଭିଭୂତ ହୋଇଯିବେ।

[ ଏହି ସମୟରେ ପ୍ରବଳୋଚ୍ଛ୍ୱାସରେ ସମୁଦ୍ର ଲହରୀ ମାଡ଼ି-ଆସି, ଶବ ଦୁଇଟିକୁ ଭସାଇ ନେଇଗଲା—ଧର୍ମା-ମା ଓ ସର-ମା ଏବଂ ବିଶୁ 'ଧର୍ମୁ', 'ଧର୍ମୁ'—'ସର ସର' ଡାକୁ ଡାକୁ କିଛିଦୂର ଅନୁଧାବନ କଲେ—ଅନ୍ୟାନ୍ୟ ଶିଳ୍ପିଗଣ ଧାଇଁ ଯାଇ ମୂର୍ଚ୍ଛିତପ୍ରାୟ ସେମାନଙ୍କୁ ଘେନି ଆସିଲେ—ମହାରାଜ ସ୍ତବ୍ଧସ୍ପନ୍ଦ ସମସ୍ତ ଦେଖୁଥିଲେ—ପରେ ହଠାତ୍ କହି ଉଠିଲେ ]

ନରସିଂହ—ଶିଶୁ। ଶିଶୁ। ଯାଅ, ଯାଅ—ଉଦ୍ଧାର କର—ଉଦ୍ଧାର କର—

[ ନାଟକ ମଧ୍ୟ ଦୌଡ଼ିଯିବା—ସେହି ସମୟରେ ମନ୍ତ୍ରୀର ପ୍ରବେଶ ]

ମନ୍ତ୍ରୀ—ମହାରାଜ। ମହାରାଜ। ଏ' କ'ଣ କରୁଛନ୍ତି?

( ଧାରଣ କରିବା )

ନରସିଂହ—ଶିଶୁ। ଶିଶୁ।—ମୋତେ ଛାଡ଼ିଦିଅ—ମୋତେ—

[ ମନ୍ଦର ମଧ୍ୟରୁ ସହସା ପୁରୋହିତଙ୍କର ବେଗେ ପ୍ରବେଶ ]

ପୁରୋହିତ—ମହାରାଜ ! ସର୍ବନାଶ—ଗୋଟାଏ ଜଳୋଚ୍ଛ୍ୱାସରେ ଦେବ-ବିଗ୍ରହ କେଉଁଆଡ଼େ ଅନ୍ତର୍ହିତ ହୋଇଛି !

ନରସିଂହ—ଏଁ !—ଏଁ—କ'ଣ କହିଲ, ଗୁରୁଦେବ ?

[ ମହାରାଣୀଙ୍କର ବ୍ୟସ୍ତ ସ୍ତ୍ରଭାବେ ପ୍ରବେଶ ]

ମହାରାଣୀ—ପ୍ରଭୋ ! କେଉଁ ଦୋଷରୁ ଆଜି ଏହି ଅମଙ୍ଗଳର ସୂଚନା ?—

ନରସିଂହ—ଏଁ ! ଏଁ ! ରାଣି—ରାଣି ! ( କଳ୍ପନାନେତ୍ରେ ଦେଖି ଦେଖି )—ଏ' କ'ଣ ଦେଖୁଛ ? ଏ' କ'ଣ ?—ମନ୍ଦରଟି ଯେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ୁଛି—ମୋ'ର କୀର୍ତ୍ତି ଯେ କଳାରେ, କଳାରେ ଲୋପ ପାଉଛି ! ରାଣି—ରାଣି ! ଏହି ମୋ'ର ଗର୍ବର ପୁରସ୍କାର—ଏହି ମୋ'ର ଅହଂକାରର ପୁରସ୍କାର !

[ ଅତି ବିକଳଭାବରେ ଅବସ୍ଥାନ କରିବା ]

ରାଣୀ, ପୁରୋହିତାଦି—ସ୍ଥିର ହେଉନ୍ତୁ, ମହାରାଜ !

[ ସହସା ସମୁଦ୍ର ବକ୍ଷ ପ୍ରାନ୍ତରେ ଗୋଟିଏ କ୍ଷୀଣ ଜ୍ୟୋତି ଦେଖାଗଲା ଓ ମୃଦୁ ମୃଦୁ ସଙ୍ଗୀତ ଭାସିଆସିବାକୁ ଲାଗିଲା ]

ଧର୍ମା-ମା—ଶୁଣ—ଶୁଣ, ଭଉଣି ! ନା, ନା—ସମୁଦୁଣି, ସମୁଦୁଣି,—ଶୁଣ, ଶୁଣ—ଉମର ସର ଗାଉଛି—ଆଜ ଧର୍ମ ମୋ'ର ମୂର୍ତ୍ତି ଗଢ଼ୁଛି—ରାଜ ଯେମିତିକା କୁଞ୍ଜବନରେ ବୁଢ଼ୀ ବସି କରୁଥାନ୍ତି ।                    ( ଗୁହିଁ ରହିବା )

ସର-ମା—ଦେଖ, ଦେଖ ମ—ଅବିକଳ ସରର ମୂର୍ତ୍ତିଟି ଗଢ଼ିଛି—

( ଗୁହିଁ ରହିବା )

ବିଶୁ—କାହିଁ ? କାହିଁ ?—ମୋତେ ଦେଖାଅ—ମୋତେ ଦେଖାଅ—ମୁଁ ପରା ସେମାନଙ୍କର ମର୍ତ୍ତି ଗଢ଼ିବ—ମହାରାଜା ହୁକୁମ

କରିଛନ୍ତି ଯେ— ( ଶିଳାଖଣ୍ଡଟି ନେଇ ଧର୍ମା-ମା ଅଜ ସର-ମା ନିକଟକୁ ଯାଇ ) କାହିଁ—କାହିଁ ? ହଜି—ହଜି, ନ ଦେଖାଅ—ନ ଦେଖାଅ ।—ମନେ କରିଚ, ମୁଁ ପରା ଦେଖୁନାହିଁ ?—ଏହି—ଏହି—( ଅଖି ବୁଜି ) — ଯୁଗଳେ ଯୁଗଳେ ଜଗ. ଯୁଗଳ ମୂରତି ।—ଠିଆ ହୁଅ, ଠିଆ ହୁଅ—ସେହିପରି ଠିଆ ହୁଅ—ମୁଁ ମୂର୍ତ୍ତି ଗଢ଼ିବି— ମୂର୍ତ୍ତି—( ପଥରରେ ଅଙ୍ଗୁଳି ଚାଳନ ପୂର୍ବକ ମୂର୍ତ୍ତି ଗଢ଼ିବାକୁ ଲାଗିଲା ଯେପରି )

ନରସିଂହ—( ନିର୍ବାକ୍, ନିଷ୍ପନ୍ଦଭାବେ ସବୁ ଦେଖୁଥିଲେ ) ପାଗଳ— ପାଗଳ ଏହି ମାନବଜାତି—ଠିକ୍ ବିଶୁପରି ପାଗଳ, ମୋ'ର ପରି ଗର୍ବୀ, ଏହି ମା' ମାନଙ୍କ ପରି ଅନ୍ଧ— ଉଦ୍ୟତ ଅଜ ବାନ୍ଧ ରଖିବାକୁ—ଚୂର୍ଣ୍ଣ କରିବାକୁ— ସଂପୂର୍ଣ୍ଣ ଲୁପ୍ତ କରିବାକୁ ଗୋଟାଏ ବିରାଟ କ୍ଷମତା, ସାମାନ୍ୟ ରକ୍ତମାଂସ ଜ୍ଞାନରେ । ଏ ଯେ ପ୍ରକୃତି ପୁରୁଷର ଲୀଳା—ବାଳକ ବାଳକାର ଅଭିନୟ କ୍ଷଣକାଳ ପାଇଁ ମର୍ତ୍ତ୍ୟଧାମେ ସିନା । ମା, ମା—ମାତୃଗଣ ।—ଏ' ନୁହେଁ ତବ ସାମାନ୍ୟ ଶିଶୁର ଖେଳା;—ଗାଇଚି ପ୍ରକୃତି ସୁଲଳିତ ସ୍ୱରେ, ଗଢ଼ୁଚି ପୁରୁଷ ସେହି ତାଳେ ତାଳେ, ବିଶ୍ୱବକ୍ଷେ ନିର୍ମିତ ତାହାର—ପ୍ରକୃତିର ଛବି—ମାନସୀ ପ୍ରତିମା ତା'ର;—ଏହି ଶୂନ୍ୟ—ମହାଶୂନ୍ୟ—କୁଞ୍ଜବନ ଦିବ୍ୟ—ନିତ୍ୟଲୀଳାସ୍ଥଳୀ ।—ସଦ୍ଭସଦ୍ ଟଣେ । ମୋ'ର ମହାନନ୍ଦ—ମୋ'ର ଦିବ୍ୟ-ଚକ୍ଷୁ ଖୋଲୁଚି—ମୋ'ର ଜ୍ଞାନାକାଶ ଉନ୍ମୁକ୍ତ ହୋଇଚି—ଅଜି ମୁଁ ବୁଝିପାରୁଚି, ଏହି 'କୋଣାର୍କ' ମୋ'ର ପ୍ରକୃତ 'କୋଣାର୍କ' ନୁହେଁ—

ଗୋଟାଏ ଧୂଳିମାଟିର 'କୋଣାର୍କ' ।—ଏହାର ଶକ୍ତି ମିଥ୍ୟା—ଏହାର ସୌନ୍ଦର୍ଯ୍ୟ ମିଥ୍ୟା—ଏହାର ଦେବ-ଦେବୀ, ବିଗ୍ରହ ମିଥ୍ୟା ।—ମୋ'ର ପ୍ରକୃତ କୋଣାର୍କ ଦେଖିବ ? —ଦେଖ ସେହିଠାରେ [ ସ୍ତମ୍ଭୀଭୂତ ସେହି ଜ୍ୟୋତି ଆଡ଼େ ଅଙ୍ଗୁଳି ନିର୍ଦ୍ଦେଶ କରିବା—ମୃଦୁ ମୃଦୁ ଗୋଟାଏ ସଙ୍ଗୀତ ଭାସି ଆସୁଥିବା;—ସମସ୍ତେ ସେହିଆଡ଼େ ଗୃହୀଁ ଅଦୃଶ୍ୟ ହେବା—ବିଶୁ କେବଳ ନିଜ କାର୍ଯ୍ୟରେ ଲାଗିଥିବା ।]

—ଯବନିକା ପତନ—

---

ଶ୍ରୀ ଅଶ୍ୱିନୀ କୁମାର ଘୋଷଙ୍କ

# ନୂତନ ନାଟକ

୧ । କସ୍ତୁଦୀ

୨ । ମାଟ୍ଲଢ୍କାର

୩ । ରାମଦାସ

ପ୍ରକାଶ ପ୍ରତୀକ୍ଷାରେ